ଉତ୍କଳ କେଶରୀ

# ଡକ୍ଟର ହରେକୃଷ୍ଣ ମହତାବ



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର

ଓଡ଼ିଶା, ଭୁବନେଶ୍ୱର

ଉତ୍କଳ କେଶରୀ

# ଡକ୍ଟର ହରେକୃଷ୍ଣ ମହତାବ



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା

ଭୁବନେଶ୍ୱର

# ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବ


| | |
|---|---|
| ଲେଖକ | ଶ୍ରୀ ବସନ୍ତ ଦାସ |
| ପ୍ରଥମ ପ୍ରକାଶ | ୧୯୯୭ |
| ନୂତନ ମୁଦ୍ରଣ | ୨୦୦୧ |
| ପ୍ରକାଶକ | ନିର୍ଦ୍ଦେଶକ<br>ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା<br>ଜନଶିକ୍ଷା ଭବନ, ୟୁନିଟ-୫,<br>ଭୁବନେଶ୍ୱର - ୭୫୧୦୦୧ |
| ପ୍ରକାଶନ ସଂଖ୍ୟା | ଏସ୍. ଆର୍. ସି - ୨୨୬-୨୭/୯୭ |
| ମୁଦ୍ରଣ ସଂଖ୍ୟା | ୨,୦୦୦ |
| ମୁଦ୍ରଣ | ବିଶ୍ୱମୁକ୍ତି ପବ୍ଲିକେଶନ, ଏ/୨, ସହିଦ ନଗର<br>ଭୁବନେଶ୍ୱର - ୭୫୧୦୦୭ |
| ମୂଲ୍ୟ | ପାଞ୍ଚ ଟଙ୍କା ମାତ୍ର |


## UTKAL KESHARI DR. HAREKRUSHNA MAHATAB


| | |
|---|---|
| Written by | Sri Basanta Das |
| 1st Edition | 1997 |
| New Edition | 2001 |
| Published by | Director,<br>State Resource Centre for Adult Education,<br>Orissa, Janasikshya Bhavan, Unit-V,<br>Bhubaneswar - 751001 |
| Publication No. : | S.R.C.-226-27/97 |
| No. of copies Printed | 2,000 |
| Printed at | Vishwamukti Publication, A/2, Saheed Nagar,<br>Bhubaneswar - 751007 |
| Price | Rupees FIVE ONLY |

## ପିଲାଦିନ

ବହୁଦିନ ତଳର କଥା । ଆମ ଦେଶ ପରାଧୀନ ଥିଲା । ଆମ ଦେଶକୁ ଗୋରା ସାହେବମାନେ ଚଳଉଥିଲେ । ସେମାନଙ୍କ ମରଜି ଉପରେ ଦେଶ ଚଳୁଥାଏ । ସେ କାଳର ଘଟଣା ଶୁଣିଲେ ଏବ କାଳର ଲୋକେ ବିଶ୍ୱାସ କରିବେ ନାହିଁ । ଗୋରା ସାହେବମାନେ ଯୁଆଡ଼େ ଯାଆନ୍ତି ଛାନିଆରେ ଲୋକେ ତାଟି-କବାଟ ପକାଇ ଦିଅନ୍ତି । ଚାରିଆଡ଼େ ଶୂନ୍‌ଶାନ୍ ହୋଇଯାଏ । ଏହିପରି ସମୟରେ ସ୍କୁଲରେ ପଢୁଥିବା ପିଲାଟେ ଜଣେ ଗୋରା ସାହେବଙ୍କୁ ଅସୁବିଧାରେ ପକାଇଥିଲା । ସେ କଥା ଶୁଣିଲେ ଆଜି ବି ତାଙ୍କ ସାହସକୁ ପ୍ରଶଂସା କରିବାକୁ ହୁଏ ।

ଦିନକର କଥା । ଜଣେ ଗୋରା କମିଶନର ସାହେବ ଭଦ୍ରଖ ଆସୁଥାନ୍ତି । ଆଜିକାଲି ଭଳି ସେ କାଳରେ ଭଦ୍ରଖ ଆସିବା ପାଇଁ ଗାଡ଼ି ମଟର ନଥିଲା । ସାଳନ୍ଦୀ ନଈ ଉପରେ ପୋଲ ନ ଥିଲା । ଘୋଡ଼ା ଗାଡ଼ି କି ମଟର ସହର ଭିତରକୁ ଆସି ପାରୁ ନ ଥିଲା । ସେତେବେଳର ସହର ଆଜି ବଦଳି ଯାଇଛି ।

ଠିକ୍ ସମୟରେ କମିଶନର ସାହେବ ଟ୍ରେନ୍‌ରୁ ଓହ୍ଲାଇଲେ । ସାଇକେଲରେ ଭଦ୍ରଖ ଆସିବାକୁ ବାହାରିଲେ । ଦେଖାଗଲା, କମିଶନରଙ୍କ ସାମନାରେ ଦୁଇଜଣ ସ୍କୁଲ ପିଲା ଦୁଇଟି ସାଇକେଲରେ ଚାଲିଛନ୍ତି । କେହି କିଛି ବୁଝି ପାରିଲେ ନାହିଁ । ଏ ପିଲା ଦି'ଜଣ କିଏ ? କେମିତି ସାହସ କଲେ, କମିଶନର ସାହେବଙ୍କ ଆଗରେ ଯିବା ପାଇଁ । ପିଲା ଦି'ଜଣ କିନ୍ତୁ ଖୁବ୍ ସାହସୀ । ତାଙ୍କର କାହାକୁ ଡର ଭୟ ନ ଥାଏ । ଖୁବ୍ ଧୀରେ ଧୀରେ ସାଇକେଲ ଚଳାଇ

କମିଶନରଙ୍କ ବାଟ ବନ୍ଦ କରୁଥାନ୍ତି । କମିଶନରଙ୍କ ଖାତିରରେ ପୋଲିସ ସେମାନଙ୍କୁ ଖୁବ୍ ଧମକ ଚମକ ଦେଲେ । ହେଲେ ଫଳ କିଛି ହେଲା ନାହିଁ । ଏଇଆ ଫଳ ହେଲା, କମିଶନର ସାହେବ ବହୁ ବିଳମ୍ବରେ ସହରରେ ପହଞ୍ଚିଲେ ।

କମିଶନର ସାହେବ ଏ ଘଟଣାରେ ରାଗି ଗଲେ । ଇଂରେଜ ଶାସନରେ ପୁଣି ଏଡ଼େ ସାହସ ! ସେ ପିଲା ଦି'ଜଣଙ୍କର ଖୋଜ ଖବର ନେଲେ । ଭଦ୍ରଖ ସ୍କୁଲ ହେଡ୍‌ମାଷ୍ଟରଙ୍କୁ ଡକାଇଲେ । ସବୁ କଥା କହିଲେ । ସମସ୍ତେ ଭାବିଥିଲେ ବୋଧହୁଏ ପିଲା ଦି'ଜଣ କିଛି ଗୁରୁତର ଶାସ୍ତି ପାଇବେ । କିନ୍ତୁ ଆଶ୍ଚର୍ଯ୍ୟର କଥା, ହେଡ୍‌ମାଷ୍ଟ୍ରେ ସବୁ କଥା ଶୁଣି ସେମାନଙ୍କୁ ଶାସ୍ତି ଦେବା ବଦଳରେ ସେମାନଙ୍କ କାର୍ଯ୍ୟର ପ୍ରଶଂସା କରିଥିଲେ । ସେହିପରି ଆଦର୍ଶ ଶିକ୍ଷକ ଓ ସାହସୀ ପିଲାଙ୍କ ଯୋଗୁଁ ଆମଦେଶ ପରେ ଗୋରା ଶାସନ କବଳରୁ ମୁକୁଳିଥିଲା ।

ସେ ଦିନର ସେହି ସାହସୀ ପିଲାଙ୍କ ଭିତରୁ ଜଣେ ହରେକୃଷ୍ଣ ମହତାବ ।

'ତୁଳସୀ ଦୁଇପତ୍ରରୁ ବାସିଲା' ପରି ହରେକୃଷ୍ଣ ମହତାବ ଯେ ଦିନେ ଜଣେ ବଡ଼ ମଣିଷ ହେବେ, ଚାରିଆଡ଼େ ନାଁ କରିବେ, ସେକଥା ମୂଳରୁ ଜଣା ପଡ଼ିଥିଲା । ରାଜାଘର ପୁଅ, ରାଜା ହେବା କଥା । ବାପା, ମା'ଙ୍କଠାରୁ ଆରମ୍ଭ କରି ସମସ୍ତେ ଏଇଆ ଆଶା କରିଥିଲେ । କିନ୍ତୁ ଫଳ ହେଲା ଓଲଟା । ନିଜେ ରାଜା ହେବା ବଦଳରେ ହରେକୃଷ୍ଣ ମହତାବ ବଡ଼ ହୋଇ ଏ ଦେଶରୁ ରାଜାଙ୍କୁ ହଟାଇବା କାମରେ ଲାଗିଲେ ।

ଇଂରେଜ ଶାସନର ବହୁତ କ୍ଷମତା ଥିଲା । ସେମାନଙ୍କ ଶାସନରେ ସୂର୍ଯ୍ୟ ଅସ୍ତ ହୁଅନ୍ତି ନାହିଁ ବୋଲି କୁହାଯାଏ । ଗୋରା ଶାସକମାନେ ଯାହା ଚାହୁଁଥିଲେ ତାହା କରୁଥିଲେ । ସେମାନଙ୍କୁ ସାମନା କରିବାର ଯୁ କାହାର ନ ଥିଲା । ମୋଟା ମୋଟି ଭାବରେ ସେତେବେଳେ ଦେଶରେ ଗୋଟିଏ ରକମର ଅନ୍ଧାରି ଶାସନ ଚାଲିଥିଲା ।

ଏହି ସମୟରେ ହରେକୃଷ୍ଣ ମହତାବ ଜନ୍ମଗ୍ରହଣ କରିଥିଲେ ବାଲେଶ୍ୱର ଜିଲ୍ଲାର ଖଇରା-ସିମୁଳିଆ ଅଞ୍ଚଳରେ । ସେତେବେଳେ ସେ ଅଞ୍ଚଳରେ ଚଳିବା ପାଇଁ ବିଶେଷ କିଛି ସୁବିଧା ନ ଥିଲା । ନାଁ ଥିଲା ବିଜୁଳି ଆଲୁଅ, ନାଁ ଯିବା ଆସିବା ପାଇଁ ରାସ୍ତା ଘାଟ । ସେ ଅଞ୍ଚଳରେ ଅଗରପଡ଼ା ଗାଁଟି ଗୋଟିଏ ଛୋଟିଆ ପଲ୍ଲୀ ଗାଁ । ସେଇ ଗାଁରେ କୃଷ୍ଣଚରଣ ଦାସଙ୍କ ପରିବାରରେ ହରେକୃଷ୍ଣ ମହତାବ ଜନ୍ମ ହୋଇଥିଲେ । ପ୍ରଥମରୁ ସେ ମହତାବ ନ ଥିଲେ । ପରେ ଅଜା ଘରକୁ ପୁଅ ହୋଇଯିବାରୁ 'ମହତାବ' ସାଙ୍ଗିଆ ହେଲା ।

ନିଜ ଜନ୍ମ ସଂପର୍କରେ ସେ ଲେଖିଛନ୍ତି, ''ମୋର ଜନ୍ମ ସନ ୧୩୦୭ ସାଲ ବିଛା ୬ ଦିନ ମଙ୍ଗଳବାର ଖ୍ରୀଷ୍ଟାବ୍ଦ ୧୮୯୯ ମସିହା ନଭେମ୍ବର ୨୧ ତାରିଖ । ଏକ ପଲ୍ଲୀଗ୍ରାମ ନାମ ଅଗରପଡ଼ା, ଜିଲ୍ଲା ବାଲେଶ୍ୱରରେ ମୋ'ର ଜନ୍ମ । ସେ ଦିନ ସପ୍ତଗ୍ରହ ଯୋଗ ହୋଇଥିଲା ଓ ସେ ଦିନ ମୋ'ର ଜନ୍ମ ଯୋଗୁଁ ମୋର ଗ୍ରହ ଭାରି ଟାଣ ବୋଲି ପିଲାଦିନୁ ମୁଁ ଶୁଣି ଆସୁଛି । ମୋ'ର ଜନ୍ମଦାତା ପିତା ସ୍ୱର୍ଗତ କୃଷ୍ଣଚରଣ ଦାସ ଜଣେ ଦରିଦ୍ର ପରିବାରର ଲୋକଥିଲେ । ମାତ୍ର ସେ ଅତି ବୁଦ୍ଧିମାନ ଥିଲେ ଓ ଦେଖିବାକୁ ଅତି ସୁନ୍ଦର ଥିଲେ । ଶିକ୍ଷା ବୋଲନ୍ତେ ଯାହା

ବୁଝାଏ, ସେଥିରୁ ସେ କିଛି ହେଲେ ପାଇବାର ସୁବିଧା ପାଇ ନ ଥିଲେ । ମୋର ମା' ସ୍ୱର୍ଗତ ତୋହଫା ବିବି ସ୍ୱର୍ଗତ ଜଗନ୍ନାଥ ମହତାବଙ୍କ କନ୍ୟା । ସେ ଅଗରପଡ଼ାର ଜଣେ ଜମିଦାର ଓ ସେ ଯେଉଁ ଘରର କର୍ତ୍ତା, ତା'ର ଇତିହାସ ଯୋଗେ ସେ ପ୍ରସିଦ୍ଧ ।''

ପାଠପଢ଼ା

ସେକାଳରେ ସବୁ ଗାଁରେ ସ୍କୁଲ ନ ଥିଲା । କେଉଁଠି କେଉଁଠି ଅବଧାନମାନେ ଚାଟଶାଳୀ ବସାଇ ପିଲାଙ୍କୁ ପଢ଼ାଉ ଥିଲେ । ଆଜିକାଲି ସମୟ ବଦଳି ଯାଉଛି । ଚାଟଶାଳୀ କିମ୍ବା ଅବଧାନ କଥା କହିଲେ ହଠାତ୍ ବୁଝି ହେଉ ନାହିଁ । କିନ୍ତୁ ସେତେବେଳର ଚାଟଶାଳୀ ଭବିଷ୍ୟତ ଶିକ୍ଷା ପାଇଁ ମୂଳଦୁଆ ପକାଉଥିଲା ।

ସେତେବେଳେ ଅଗରପଡ଼ାରେ ମଧ୍ୟ ଗୋଟିଏ ଚାଟଶାଳୀ ଥିଲା । ସେଥିରେ ଅବଧାନ ଥିଲେ ସଦେଇ ଦାସ । ତାଙ୍କ ବୟସ ୯୦ରୁ ବେଶି ଥିଲା । ତାଙ୍କର ବୟସ ସାଙ୍ଗକୁ ଅଧିକ ଜ୍ଞାନଥିବାରୁ ତାଙ୍କୁ ସମସ୍ତେ ମାନୁଥିଲେ । ଚାଟଶାଳୀରେ ଅକ୍ଷର ଶିକ୍ଷାଠାରୁ ଆରମ୍ଭ କରି ପଣକିଆ ଯାଏ ସବୁ ପଢ଼ା ଯାଉଥିଲା । ଭଲ ଦିନ, ଭଲ ବେଳା ଦେଖି ଚାଟଶାଳୀରେ ପାଠପଢ଼ା ଆରମ୍ଭ ହୁଏ । ଅବଧାନଙ୍କୁ ଚାଟମାନେ ଭଗବାନଙ୍କ ଭଳି ଭକ୍ତି କରନ୍ତି । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଉଚ୍ଚାରଣ ପରେ ମାଟିରେ ଖଡ଼ି ସାହାଯ୍ୟରେ ମୁଣ୍ଡଳା କରି ମୁଣ୍ଡରେ ମାରନ୍ତି । ଏବେ ସେ କଥା ସାତ ସପନ ହେଲାଣି ।

ହରେକୃଷ୍ଣ ମହତାବ ପ୍ରଥମେ ସେ ଚାଟଶାଳୀରେ ପାଠ ପଢ଼ା ଆରମ୍ଭ କରିଥିଲେ । ପରେ ସେ ଗାଁରେ ନିମ୍ନ ପ୍ରାଥମିକ ସ୍କୁଲ ଓ ମଧ୍ୟ

ଇଂରାଜୀ ସ୍କୁଲ ସ୍ଥାପିତ ହୋଇଥିଲା । କିଶୋର ହରେକୃଷ୍ଣ ମହତାବ ଗ୍ରାମ ସ୍କୁଲରେ ପଢ଼ିଲେ । ସେତେବେଳେ ଗାଁ ସ୍କୁଲରେ ଇଂରାଜୀ ପଢ଼ିବାର ସୁବିଧା ନ ଥିଲା । ହରେକୃଷ୍ଣ ଓ ତାଙ୍କ ବଡ଼ ଭାଇ ନରସିଂହ ଚରଣଙ୍କ ପାଇଁ ଅଲଗା ମାଷ୍ଟର ଇଂରାଜୀ ଶିକ୍ଷା ପାଇଁ ରଖାଗଲା । ଘରୋଇ ଭାବରେ ଇଂରେଜୀ ପଢ଼ିବାର ସୁବିଧା ହୋଇଗଲା ।

ଗାଁ ସ୍କୁଲରେ ପାଠ ପଢ଼ା ସାରି ହରେକୃଷ୍ଣ ଭଦ୍ରଖ ହାଇସ୍କୁଲକୁ ପାଠ ପଢ଼ିବାକୁ ଆସିଲେ । ସେତେବେଳେ ଛାତ୍ରମାନଙ୍କୁ ଶୃଙ୍ଖଳିତ ଭାବରେ ରହିବାକୁ ପଡୁଥିଲା ।

ହରେକୃଷ୍ଣ ପ୍ରଥମରୁ ଭଲ ଛାତ୍ର ଥିଲେ । ଶ୍ରେଣୀରେ ଇଂରେଜୀ, ଅଙ୍କ, ସଂସ୍କୃତ ଆଦିରେ ପ୍ରଥମ ବା ଦ୍ୱିତୀୟ ହେଉଥିଲେ । ହେଲେ ତାଙ୍କ ମନ କ୍ରମେ ପାଠରୁ ଅଲଗା ଦିଗକୁ ଗତି କରିବାକୁ ଲାଗିଲା । ବିଶ୍ୱଯୁଦ୍ଧ ଚାଲିଥାଏ । ଇଂରେଜମାନଙ୍କ ବିରୁଦ୍ଧରେ ଆମ ଦେଶରେ ଆନ୍ଦୋଳନ ଆରମ୍ଭ ହେଉଥାଏ । ସେ ଖବର ସବୁ ତାଙ୍କ କାନରେ ବାଜିଲା । ଫଳରେ ସେ ଆଡ଼କୁ ତାଙ୍କର ଆଗ୍ରହ ବଢ଼ିଲା ।

ଗୋଟିଏ ଛୋଟିଆ ଘଟଣା । ଭଦ୍ରଖ ହାଇସ୍କୁଲ ପଡ଼ିଆରେ ଗୋଟିଏ ବଡ଼ ସଭାର ଆୟୋଜନ ହୋଇଥାଏ । ସେଠାରେ ଭଦ୍ରଖ ସବ୍‌ଡ଼ିଭିଜନ୍ ଅଫିସରଙ୍କୁ ରାୟ ବାହାଦୁର ଉପାଧି ଦିଆ ଯିବ । ବହୁ ଲୋକଙ୍କର ଭିଡ଼ । ସ୍କୁଲ ପିଲାମାନେ ଜମା ହୋଇଥାନ୍ତି । ହଠାତ୍ ଜଣେ ପୋଲିସ୍ ଇନିସ୍‌ପେକ୍ଟର ଗୋଟିଏ ପିଲା ପ୍ରତି ଖରାପ ବ୍ୟବହାର କଲେ । ଫଳରେ ଛାତ୍ର ଓ ପୋଲିସ୍ ଭିତରୁ ପିଟାପିଟି ଆରମ୍ଭ ହୋଇଗଲା । ପିଲାଙ୍କ ସଂଘବଦ୍ଧ ଆକ୍ରମଣ ଫଳରେ ସବୁ ପୋଲିସ୍

କର୍ମଚାରୀ ସଭା ଭାଗା ଛାଡ଼ି ପଳାଇଲେ । ଶେଷରେ ସଭା ଭଣ୍ଡୁର ହୋଇଗଲା । ଏ ଘଟଣାରେ ଛାତ୍ର ହରେକୃଷ୍ଣ ଓ ତାଙ୍କ ସାଥୀ ପିଲାଏ ଥିଲେ । କିନ୍ତୁ ସ୍କୁଲର ହେଡ୍‌ମାଷ୍ଟର ସେମାନଙ୍କୁ ସମର୍ଥନ କରୁଥିବାରୁ ପୋଲିସ୍ ସେମାନଙ୍କ ବିରୁଦ୍ଧରେ କିଛି କରି ପାରିଲେ ନାହିଁ । ସେତେବେଳେ ଇଂରେଜ ବିରୋଧୀ ହେବା ଥିଲା ଦୋଷାବହ । ତଥାପି କେତେକ ଶିକ୍ଷକଙ୍କର ପ୍ରେରଣା ଯୋଗୁଁ ଛାତ୍ରମାନେ ଦେଶପ୍ରେମରେ ଉଦ୍‌ବୁଦ୍ଧ ହେଉଥିଲେ ।

### ପାରିବାରିକ ଜୀବନ

ହରେକୃଷ୍ଣ ହାଇସ୍କୁଲରେ ପଢୁଥିଲା ବେଳେ ତାଙ୍କ ମା' ମରିଗଲେ । ମାଆଙ୍କ ମରିବାର କେଇମାସ ପରେ ତାଙ୍କ ବାପା, ହରେକୃଷ୍ଣଙ୍କୁ ହାତକୁ ଦି'ହାତ କରିବାକୁ ଚିନ୍ତା କଲେ । ତାଙ୍କର ଚିନ୍ତାଧାରା ଥିଲା ଅଲଗା । ପାଠପଢ଼ି ଚାକିରି କଥା ନୁହେଁ । ହାକିମ-ହୁକୁମାଙ୍କ ସାଙ୍ଗରେ ଇଂରେଜୀରେ ଦି'ପଦ କଥା କହିଲେ ହେଲା । ବାହାସାଦି ହୋଇ ଜମିବାଡ଼ି ଦେଖିବା ହେଉଛି ମୂଳ । ହରେକୃଷ୍ଣଙ୍କର ଏତେ କମ୍ ବୟସରୁ ବିବାହ କରିବା ପାଇଁ ଇଚ୍ଛା ନଥିଲା । ହେଲେ ବାପାଙ୍କର କୌଣସି କଥାରେ ବାଧା ଦେବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ମନରେ ଖୁବ୍ ଦୁଃଖ । କାରଣ, ଦେଶପାଇଁ କିଛି କାମ କରିବାର ପ୍ରବଳ ଇଚ୍ଛା । ସାଧାରଣ ଜୀବନ ବଦଳରେ ଆଉ କିଛି ଅଲଗା ରକମର ଜୀବନ ଯାପନ କରିବାକୁ ସେ ଠିକ୍ କରିଥାନ୍ତି । ଇଂରେଜୀ ଟିକିଏ ପଢ଼ି ଘରେ ବସି ଜମିଦାରୀଟିଏ ଚଳେଇବା କଥା ତାଙ୍କ ମନକୁ ପାଉ ନଥାଏ । କିନ୍ତୁ ମନ ଖୋଲି କାହାକୁ କିଛି କହି ପାରୁ ନଥାନ୍ତି ।



ଯାହାକୁ ବା କିଛି କହୁଥିଲେ ସେ ତାଙ୍କ ପକ୍ଷ ନ ନେଇ ବାହାଘର ସପକ୍ଷରେ ଯୁକ୍ତି କରୁଥିଲେ ।

କଟକ ଜିଲ୍ଲା ଅସୁରେଶ୍ୱର ଗ୍ରାମ । ଆନନ୍ଦରାମ ସିଂହଙ୍କ ଝିଅ ସୁଭଦ୍ରାଙ୍କ ସହିତ ହରେକୃଷ୍ଣଙ୍କ ବାହାଘର ଜାକଜମକରେ ହୋଇଗଲା ।

ବାହାଘରର କେତେମାସ ପରେ ମାଟ୍ରିକ୍ ପରୀକ୍ଷା ଆରମ୍ଭ ହେଲା । ସବୁ ଅସୁବିଧା ଭିତରେ ପରୀକ୍ଷା ଦେଇ ହରେକୃଷ୍ଣ ପ୍ରଥମ ଶ୍ରେଣୀରେ ମାଟ୍ରିକ ପାସ୍ କଲେ । ମାଟ୍ରିକ ପାସ୍ କରିବା ପରେ ତାଙ୍କ ମନରେ ଦ୍ୱନ୍ଦ୍ୱ ଆରମ୍ଭ ହେଲା । ଏକ ପକ୍ଷରେ ଅଧିକ ପାଠ ପଢ଼ି ବଡ଼ ମଣିଷ ହେବା ପାଇଁ ତାଙ୍କର ପ୍ରବଳ ଇଚ୍ଛା । ଅନ୍ୟ ପକ୍ଷରେ ପାଠ ପଢ଼ାରେ ଡୋରି ବାନ୍ଧି ଘର ସଂସାର କରି ଜମିଦାରୀ ବୁଝିବାକୁ ବାପାଙ୍କର ତାଗିଦ୍ । ପାଠକୁ ଛାଡ଼ିବାକୁ ଇଚ୍ଛା ନଥାଏ । ବାପାଙ୍କ କଥା ଭାଙ୍ଗିବାକୁ ବି ସାହସ ନ ଥାଏ । ଶେଷରେ ସାହସ ସଞ୍ଚୟ କରି ତାଙ୍କର କଲେଜରେ ପଢ଼ିବା ଉଚିତ୍ ବୋଲି ମନେ କଲେ । ବାପାଙ୍କ ପାଖକୁ ଚିଠିଟିଏ ଲେଖିଲେ । ବାପା ବି ତାଙ୍କର ଯୁକ୍ତି ଦେଖାଇ ଚିଠିର ଉତ୍ତର ଦେଲେ ।

**କଲେଜ ଜୀବନ**

ଶେଷରେ ହରେକୃଷ୍ଣଙ୍କ ଜୀବନରେ ବଡ଼ ହେବାର ଆଶା ପୂରଣ ହେଲା । ସେ କଟକ ରେଭେନ୍‌ସା କଲେଜରେ ନାଁ ଲେଖାଇଲେ । କଟକ ଆସି କେତେଜଣ ସାଙ୍ଗ ସାଥୀଙ୍କ ସହିତ ମେସ୍‌ରେ ରହିଲେ । ନବକୃଷ୍ଣ ଚୌଧୁରୀଙ୍କ ସହିତ ତାଙ୍କର ସେତିକିବେଳେ ସାକ୍ଷାତ ହେଲା । ଅନ୍ୟ କେତେକ ନୂଆ ବନ୍ଧୁ ବି ମିଳିଗଲେ । କଲେଜରେ ପାଠ ପଢ଼ା

ସହିତ ରହୁଥିବା ମେସ୍‌ଟି କ୍ରମେ ରାଜନୈତିକ ଚର୍ଚ୍ଚାର ଗୋଟିଏ କେନ୍ଦ୍ର ହୋଇଗଲା । ଅନ୍ୟ ବନ୍ଧୁମାନଙ୍କ ସାହାଯ୍ୟରେ ହରେକୃଷ୍ଣ ମହତାବ ସେ ମେସ୍‌ରୁ 'ମଳୟ' ନାଁରେ ଗୋଟିଏ ହାତଲେଖା ମାସିକ ପତ୍ରିକା ବାହାର କଲେ । ପରେ 'ଡଷ୍ଟବିନ୍' ନାଁରେ ଆଉ ଗୋଟିଏ ଇଂରାଜୀ ସାପ୍ତାହିକୀ ମଧ୍ୟ ତାଙ୍କରି ଉଦ୍ୟମରେ ପ୍ରକାଶ ପାଇଲା ।

ଖବର କାଗଜ ପ୍ରକାଶନ ଓ ଅନ୍ୟାନ୍ୟ କାର୍ଯ୍ୟରେ ଅଧିକ ସମୟ ଦେଲାରୁ ତାଙ୍କର ପାଠ ପଢ଼ାରେ ଅବହେଳା ହେଲା । ସାଙ୍ଗ ସାଥୀମାନେ ଭାବିଲେ ମହତାବ୍ ବୋଧେ ପରୀକ୍ଷାରେ ଫେଲ୍ ହୋଇଯିବେ । କିନ୍ତୁ ନିଜର ଅଧ୍ୟବସାୟ ବଳରେ ସେ ଦ୍ୱିତୀୟ ଶ୍ରେଣୀରେ ଆଇ.ଏସ.ସି. ପାସ୍ କଲେ । ପରେ ସେ ନିଜ ଜୀବନର ଧାରା ବଦଳାଇବାକୁ ନିଷ୍ପତ୍ତି କଲେ । ସେହି ଅନୁସାରେ ଆଇ.ଏସ୍.ସି. ପରେ ବି.ଏସ୍.ସି. ନପଢ଼ି ବି.ଏ. ଶ୍ରେଣୀରେ ନାଁ ଲେଖାଇଲେ ।

ହରେକୃଷ୍ଣ ମହତାବ କଲେଜରେ ପଢୁଥିଲା ବେଳେ 'ଓଡ଼ିଶା' ବୋଲି କୌଣସି ରାଜ୍ୟ ନଥିଲା । ଏ ରାଜ୍ୟର କିଛି ଅଂଶ ବିହାର ଆଉ କିଛି ଅଂଶ ମାନ୍ଦ୍ରାଜ ସହିତ ମିଶି କରିଥିଲା । ତା ଛଡ଼ା ଓଡ଼ିଆ ଭାଷା ପ୍ରତି ବି ଘୋର ବିପଦ ଦେଖା ଦେଇଥାଏ । ଉତ୍କଳଗୌରବ ମଧୁସୂଦନ ଦାସ ଉତ୍କଳ ସମ୍ମିଳନୀ ଜରିଆରେ ଓଡ଼ିଆମାନଙ୍କୁ ଏକାଠି କରିବା ଉଦ୍ୟମରେ ଥାଆନ୍ତି । ଉତ୍କଳମଣି ଗୋପବନ୍ଧୁ ଦାସ ଓଡ଼ିଶାରେ କଂଗ୍ରେସ ସଂଗଠନ ଆରମ୍ଭ କରିଥାନ୍ତି ।

କଟକରେ ଉତ୍କଳ ସମ୍ମିଳନୀର ଗୋଟିଏ ଅଧିବେଶନ ହେଲା । ହରେକୃଷ୍ଣ ମହତାବ ସେଥିରେ ସ୍ୱେଚ୍ଛାସେବକ ଭାବେ ଯୋଗ

ଦେଇଥିଲେ । ମଧୁବାବୁଙ୍କ ଚିନ୍ତାଧାରା, ସାହସ ଓ ଉତ୍ସାହ ବାଣୀରେ ସେ ଖୁବ୍ ଅନୁପ୍ରାଣିତ ହୋଇଥିଲେ । ସେତେବେଳକୁ ମାହାତ୍ମାଗାନ୍ଧିଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇଥାଏ । ଇଂରେଜ ଶାସକମାନଙ୍କ ବିରୁଦ୍ଧରେ ଲଢ଼େଇ କରିବା ପାଇଁ ଛାତ୍ରମାନଙ୍କୁ 'ବାପୁ' ଡାକରା ଦେଇଥାନ୍ତି । ପ୍ରଥମେ ରାଉଲଟ ଆଇନ, ତା'ରି ପ୍ରତିବାଦରେ ସତ୍ୟାଗ୍ରହ, ପୁଣି ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡ, ଶେଷରେ ମହାତ୍ମାଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନର ଆରମ୍ଭ । ଏସବୁ ଗୋଟିକ ପରେ ଗୋଟିଏ ଘଟଣା ବଡ଼ ଚଞ୍ଚଳର ଘଟିଯାଉଥାଏ । ଯୁବକ ହରେକୃଷ୍ଣଙ୍କ ପକ୍ଷେ ଥୟ ଧରି ରହିବା ଅସମ୍ଭବ ହୋଇ ପଡ଼ିଲା ।

## ରାଜନୈତିକ ଜୀବନ ଆରମ୍ଭ

ହରେକୃଷ୍ଣ ମହତାବ କଟକ ସହରରେ ରହି କଲେଜରେ ପଢୁଥିବା ବେଳର କଥା । ସହରର ବାଖରାବାଦରେ "ଭାରତୀ ମନ୍ଦିର" ବୋଲି ଗୋଟିଏ ପାଠାଗାର ସ୍ଥାପିତ ହୋଇଥିଲା । ବାହାରକୁ ଏହାର ନାମ ପାଠାଗାର ଥିଲେ ହେଁ ଯୁବକମାନଙ୍କୁ ଦେଶଭକ୍ତି ଓ ଦେଶପ୍ରେମରେ ଅନୁପ୍ରାଣିତ କରିବା ପାଇଁ ଏହା ଥିଲା ଏକ କେନ୍ଦ୍ର । ଏଥିରେ ନିତ୍ୟାନନ୍ଦ କାନୁନ୍‌ଗୋ, ନବକୃଷ୍ଣ ଚୌଧୁରୀ, ଭାଗିରଥୀ ମହାପାତ୍ର ଆଦି ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । ଯୁବକ ହରେକୃଷ୍ଣ ମହତାବ ସେମାନଙ୍କୁ ସହଯୋଗ ଦେଲେ ।

ସେତେବେଳେ ଇଂରେଜ ସରକାରଙ୍କ ସହିତ ଅସହଯୋଗ କରିବା ପାଇଁ ଗାନ୍ଧିଜୀ ଯୁବକମାନଙ୍କୁ ଡାକରା ଦେଇଥିଲେ । ଏହା ଯୁବକମାନଙ୍କ ମନରେ ଉତ୍ସାହ ସୃଷ୍ଟି କରିଥାଏ । ଏହି ଅସହଯୋଗ

ପ୍ରସ୍ତାବ ସଂପର୍କରେ ଆଲୋଚନା ପାଇଁ କଲିକତାରେ 'କଂଗ୍ରେସ'ର ଗୋଟିଏ ଅଧିବେଶନ ହୋଇଥିଲା । ସେଠି କ'ଣ ସବୁ ଆଲୋଚନା ହେବ, ସେ କଥା ଜାଣିବା ପାଇଁ ଯୁବକ ମହତାବ କଲିକତା ଗଲେ । ସେ ଅଧିବେଶନରେ ଆନିବେସାନ୍ତ, ଚିତ୍ତରଂଜନ ଦାସ୍, ମୋତିଲାଲ ନେହେରୁ, ଲାଲା ଲଜପତ୍ ରାୟ, ପଣ୍ଡିତ ମଦନ ମୋହନ ମାଲବ୍ୟ ଓ ମହାତ୍ମା ଗାନ୍ଧିଙ୍କ ବକ୍ତୃତା ସେ ଶୁଣିଲେ ।

ମହତାବ କଲିକତାରୁ ଫେରିଲେ । ଭାରତୀ ମନ୍ଦିର ଆଗ ଅପେକ୍ଷା ଅଧିକ କର୍ମ-ଚଞ୍ଚଳ ହୋଇ ଉଠିଲା । ସେଠାରେ କଂଗ୍ରେସ ଅଧିବେଶନ ସଂପର୍କରେ ଚର୍ଚ୍ଚା ହେଲା । ଯୁବକମାନେ କଲେଜ ଛାଡ଼ି ଆନ୍ଦୋଳନରେ ଯୋଗ ଦେବା ପାଇଁ ଠିକ୍ କଲେ । ପାଠ ପଢ଼ାରେ ମନ ଲାଗୁନଥାଏ । ପରୀକ୍ଷା ମୁଣ୍ଡ ଉପରେ ଥିବାରୁ ମନରେ ଚିନ୍ତା । ଟେଷ୍ଟପରୀକ୍ଷା ସରିଥାଏ । ଫାଇନାଲ୍ ପରୀକ୍ଷା ହେବାକୁ ବାକି ଅଛି । ଏତିକିବେଳେ ନାଗପୁରରେ କଂଗ୍ରେସ ଅଧିବେଶନ ବସିଲା । ଭାରତୀ ମନ୍ଦିରରେ ବିଚାର ହେଲା । ହରେକୃଷ୍ଣ ମହତାବ ଓ ଭାଗିରଥୀ ମହାପାତ୍ର ସେ ଅଧିବେଶନରେ ଯୋଗଦେଲେ । ନାଗପୁର କଂଗ୍ରେସରେ ଯୋଗଦେବା ବେଳେ ମହତାବଙ୍କର ଗୋପବନ୍ଧୁ ଦାସଙ୍କ ସହିତ ପ୍ରଥମ ସାକ୍ଷାତ ହୋଇଥିଲା ।

ଓଡ଼ିଶାରେ ସେତେବେଳକୁ କଂଗ୍ରେସ ସଂଗଠନ ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ଆରମ୍ଭ ହୋଇସାରିଥାଏ । ବହୁ ବିଚାର ଆଲୋଚନା ପରେ ହରେକୃଷ୍ଣ ମହତାବ ଓ ନବକୃଷ୍ଣ ଚୌଧୁରୀ କଲେଜ ଛାଡ଼ିଲେ ।

କଂଗ୍ରେସ ସଂଗଠନରେ ଯୋଗ ଦେଲେ । ମହତାବ କଂଗ୍ରେସ କାର୍ଯ୍ୟ ନିର୍ବାହିକା ସମିତିର ଜଣେ ସଦସ୍ୟ ଭାବେ ନିର୍ବାଚିତ ହୋଇଥିଲେ ।

ମହାତ୍ମାଗାନ୍ଧିଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ ଦିନକୁ ଦିନ ଜୋରଦାର ହେଉଥାଏ । ଇଂରେଜ ସରକାର ଏ ଆନ୍ଦୋଳନକୁ ଦବାଇବା ପାଇଁ ଅତ୍ୟାଚାର ଆରମ୍ଭ କରି ଦେଇଥାନ୍ତି । ମହାତ୍ମାଗାନ୍ଧି ଦେଶ ସାରା ବୁଲି ବୁଲି ଲୋକଙ୍କୁ ବୁଝାଉଥାନ୍ତି । ସେହି ସମୟରେ ଗାନ୍ଧିଜୀ ଭଦ୍ରଖ, କଟକ, ପୁରୀ ଓ ବ୍ରହ୍ମପୁର ଆସିଥିଲେ । ସେ ଫେରିଯିବା ପରେ ଲୋକଙ୍କ ମନରେ ଉତ୍ସାହ ବହୁ ଗୁଣରେ ବଢ଼ିଯାଇଥିଲା । ଅଧିକ ସଂଖ୍ୟାରେ ଛାତ୍ର-ଛାତ୍ରୀ ସ୍କୁଲ-କଲେଜ ଛାଡ଼ି ଆନ୍ଦୋଳନରେ ଯୋଗ ଦେଲେ । କିନ୍ତୁ ସେମାନଙ୍କୁ ସଂଗଠିତ କରିବା ଓ ଠିକ୍ ଭାବରେ କାମରେ ଲଗାଇବା ଏକ ସମସ୍ୟା ଭାବରେ ଦେଖାଦେଲା । ବହୁ ଆଲୋଚନା ପରେ ହରେକୃଷ୍ଣ ମହତାବ ବାଲେଶ୍ୱର ଜିଲ୍ଲା କଂଗ୍ରେସ ସଂଗଠନ ଦାୟିତ୍ୱରେ ରହିବେ ବୋଲି ଠିକ୍ ହେଲା ।

ମହତାବ ବାବୁ ବାଲେଶ୍ୱର ଗଲେ । ସେଠାରେ ଅନ୍ୟମାନଙ୍କ ସହଯୋଗରେ 'ସ୍ୱରାଜ୍ୟ ମନ୍ଦିର' ନାଁରେ ଅନୁଷ୍ଠାନଟିଏ ଗଢ଼ିଲେ । ଏହି ଅନୁଷ୍ଠାନରେ ଧୀରେ ଧୀରେ ଅଧିକ ସଭ୍ୟ ଯୋଗ ଦେଲେ । ନିଶା ଦୋକାନ ଆଗରେ ସତ୍ୟାଗ୍ରହ କରିବା, ବିଦେଶୀଲୁଗା ବନ୍ଦ କରିବା, କଂଗ୍ରେସ ସଭ୍ୟ ସଂଗ୍ରହ ଓ ସ୍ୱରାଜ୍ୟ ମନ୍ଦିର ଚଳିବା ପାଇଁ ମୁଠି ଚାଉଳ ଭିକ୍ଷା ମାଗିବା ସେତେବେଳର ଥିଲା ମୁଖ୍ୟ କାମ । ଘଟଣା କ୍ରମେ ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟି ଗଠିତ ହେଲା । ମହତାବ ବାବୁ ତା'ର ହେଲେ ସଂପାଦକ ।

## ଜେଲ୍ ବରଣ

ଦିନକର ଘଟଣା । ମହତାବ ବାବୁ ସ୍ୱରାଜ୍ୟ ମନ୍ଦିରରେ ତନ୍ତରେ ବସି ଲୁଗା ବୁଣୁଥିଲେ । ସେ ହଠାତ୍ ଖବର ପାଇଲେ, ଜଣେ ଗାଡ଼ିବାଲା ଛିଦ୍ କରି ତା ଗାଡ଼ିରେ ବିଲାତି ଲୁଗା ଆଣୁଛି । ଏ ଖବର ଶୁଣି ମହତାବ ତନ୍ତରୁ ଉଠି ଗଲେ । ଅନ୍ୟ ତିନି ଚାରିଜଣ କର୍ମୀଙ୍କୁ ଧରି ସେ ଗାଡ଼ି ଆଗରେ ଯାଇ ଶୋଇ ପଡ଼ିଲେ । ରାସ୍ତା ଅବରୋଧ ଅପରାଧରେ ପୋଲିସ ସେମାନଙ୍କୁ ଧରି ନେଲା । ବିଚାର ପରେ ପ୍ରତ୍ୟେକଙ୍କୁ ୨୫ ଟଙ୍କା ଜୋରିମାନା ହେଲା । ଜୋରିମାନା ଟଙ୍କା ନଦେଲେ ୧୫ ଦିନ ଜେଲ୍ ଦଣ୍ଡ । ଜୋରିମାନା ନ ଦେଇ ସମସ୍ତେ ଜେଲ୍ ବରଣ କଲେ । ତାହାହିଁ ଥିଲା ମହତାବ ବାବୁଙ୍କ ଜୀବନର ପ୍ରଥମ ଜେଲ୍‌ବରଣ । ସ୍ୱାଧୀନତା ଆନ୍ଦୋଳନ କାଳରେ ସେ ସାତଥର ଗିରଫ ହୋଇ ଦୀର୍ଘ ଆଠ ବର୍ଷ କାଳ ଜେଲ୍ ଜୀବନ ବିତାଇଛନ୍ତି । କିନ୍ତୁ ପ୍ରଥମ ଜେଲ୍ ଯିବା ଅନୁଭୂତି ସେ ଭୁଲି ପାରି ନାହାନ୍ତି । ଜେଲ୍‌ର ଲୁହାବାଟି, ବାଲିମିଶା ଚାଉଳ ଓ କମ୍ବଳ କାରବାର କ୍ରମେ ତାଙ୍କର ଦିହସୁହା ହୋଇଗଲା ।

ଏହାର କିଛିଦିନ ପରେ ହରେକୃଷ୍ଣ ମହତାବ ଓ ନିରଞ୍ଜନ ପଟ୍ଟନାୟକଙ୍କର ଲକ୍ଷ୍ନୌଠାରେ ପଣ୍ଡିତ ମଦନମୋହନ ମାଲବ୍ୟଙ୍କ ସହିତ ସାକ୍ଷାତ ହେଲା । ସେଠାରୁ ଫେରିବା ବେଳେ ପୋଲିସ ତାଙ୍କୁ କଟକ ଷ୍ଟେସନରୁ ଗିରଫ କରି ନେଲା ।

ସେତେବେଳେ ଜେଲ୍‌ରେ ବନ୍ଦୀମାନଙ୍କ ଭିତରେ ଶ୍ରେଣୀ ବିଭାଗ ନଥିଲା । ବିଚାରକମାନେ ଯାହାକୁ ସ୍ୱତନ୍ତ୍ର ଶ୍ରେଣୀରେ ରଖିବାକୁ ଆଦେଶ

ଦେଉଥିଲେ, ସେମାନଙ୍କୁ ସ୍ୱତନ୍ତ୍ର ସୁବିଧା ଦିଆଯାଉଥିଲା । ନହେଲେ ସେମାନେ ସାଧାରଣ କଏଦୀ ଭାବରେ ରହୁଥିଲେ । ବାଲେଶ୍ୱର ଜେଲ୍‌ରେ ଆଠ ଦିନ ରହିବା ପରେ ହାତକଡ଼ି ଓ ଗୋଡ଼ରେ ବେଡ଼ି ପକାଇ ମହତାବ ବାବୁଙ୍କୁ କଟକ ଜେଲ୍‌କୁ ଅଣାଗଲା । ସେତେବେଳର ଜେଲ୍ ବ୍ୟବସ୍ଥା ଭାରି କଠୋର ଥିଲା । କଏଦୀମାନଙ୍କୁ ଜେଲ୍ ଭିତରେ କଠିନ ପରିଶ୍ରମ କରିବାକୁ ପଡୁଥିଲା । ପୋଷାକ କହିଲେ ଦୁଇଖଣ୍ଡ ଜଙ୍ଘିଆ, ଦୁଇଖଣ୍ଡ ହାତ ନଥିବା ଜାମା ଆଉ ଗାମୁଛା କରିବା ପାଇଁ ଖଣ୍ଡେ ଛୋଟ କନା । ଖାଇବା ପାଇଁ ଗୋଟିଏ ଲୁହା ଥାଳି ଓ ଗୋଟିଏ ଥାଳିଆ । ଖାଇବାକୁ ମିଳୁଥିଲା ଭାତ, ଡାଲି, ଶାଗ ଓ ତେନ୍ତୁଳି । ଭାତରେ ଏତେ ଗୋଡ଼ି ଯେ ଚୋବେଇ ହୁଏ ନାହିଁ ।

ପ୍ରାୟ ମାସକ ପରେ ମହତାବ ବାବୁଙ୍କୁ କଟକ ଜେଲ୍‌ରୁ ଭାଗଲପୁର ଜେଲ୍‌କୁ ନିଆଗଲା । ସବୁବେଳେ ହାତରେ ହାତକଡ଼ି ଓ ଅଣ୍ଟାରେ ଦଉଡ଼ି । ଜେଲ୍‌ରେ ରହିବା ସମୟରେ ଦିନକୁ ୧୫ ଘଣ୍ଟାର ଶାରୀରିକ ପରିଶ୍ରମ । ଅସହ୍ୟ ଯନ୍ତ୍ରଣା । ମହତାବ ବାବୁ ଏସବୁକୁ ସହ୍ୟ କରିନେବା ପାଇଁ ଚେଷ୍ଟା କରୁଥିଲେ । ହେଲେ ସମ୍ଭବ ହେଉ ନଥାଏ । ପ୍ରତିଦିନ ପଚସ୍ତରୀ ସେର ଧାନ କୁଟିବା କିମ୍ବା କୋଡ଼ିଏ ସେର ଗହମ ଚୂରିବା ସହଜ କଥା ନଥିଲା । ଶେଷରେ ସେ ଜେଲ୍ ସୁପରିଟେଣ୍ଡେଣ୍ଟଙ୍କୁ କୁହାବୋଲା କରି ଲେଖାପଢ଼ା କାମ ପାଇଲେ ।

ମହତାବ ବାବୁଙ୍କ ନିଷ୍ଠାରେ ଜେଲ୍ କର୍ତ୍ତୃପକ୍ଷଙ୍କ ମନୋଭାବ ତାଙ୍କ ପ୍ରତି କୋହଳ ହୋଇଥିଲା । ଯାହା ଫଳରେ କି ସେ ଲେଖିବା ପାଇଁ କାଳି, କଲମ ଓ କାଗଜ ପାଇଲେ । ରାତିରେ ପଢ଼ିବା ପାଇଁ ଲଣ୍ଠନଟିଏ

ତାଙ୍କୁ ଯୋଗାଇ ଦିଆଯାଉଥିଲା । ଏହାରି ସୁଯୋଗରେ ମହତାବ ବାବୁ 'ଅଜବ ଦୁନିଆ' ନାଁ ରେ ଏକ ଓଡ଼ିଆ ଉପନ୍ୟାସ ଓ 'ଫ୍ରି ଥିଙ୍କିଙ୍ଗ' ବୋଲି ଆଉ ଖଣ୍ଡେ ଇଂରେଜୀ ବହି ଲେଖିଥିଲେ । ପରେ ପୋଲିସ୍ 'ଅଜବ ଦୁନିଆ' ର ମୂଳ ଲେଖାଟି ଜବତ କରି ପୋଡ଼ି ଦେଲା । ସେ ବହିଟି ଆଉ ଛପା ହୋଇ ପାରିଲା ନାହିଁ ।

**ବନ୍ଦୀରୁ ଐତିହାସିକ**

୧୯୪୨ ମସିହା ଅଗଷ୍ଟ ମାସ ଆଠ ତାରିଖ । ନିଖିଳ ଭାରତ କଂଗ୍ରେସ କମିଟି ତା' ପରଦିନ ଠାରୁ ସତ୍ୟାଗ୍ରହ ପାଇଁ ସ୍ଥିର କରିଥିଲେ । ତା' ପରଦିନ ଠାରୁ ସାରା ଦେଶରେ ଜୋର୍‌ଦାର ଆନ୍ଦୋଳନ ଆରମ୍ଭ ହେବା କଥା । ମାତ୍ର ବ୍ରିଟିଶ ସରକାର ଭାରତବାସୀଙ୍କୁ ସେ ସୁଯୋଗ ଦେଲେ ନାହିଁ । ରାତି ପାହିବା ଆଗରୁ ଦେଶର ବଡ଼ ବଡ଼ ନେତାମାନଙ୍କୁ ଗିରଫ କରାଯାଇ ଜେଲ୍‌ରେ ଠୁଙ୍କି ଦିଆଗଲା ।

ଅହମଦନଗରରେ ଥିବା ମୋଗଲ ବେଳର "ଚାନ୍ଦବିବି କିଲ୍ଲା" ବା ଅହମଦ ନଗର ଫୋର୍ଟ ଜେଲ୍ । ଦେଶର ବଡ଼ ବଡ଼ ନେତା ପଣ୍ଡିତ ଜବାହର ଲାଲ ନେହେରୁ, ମୌଲାନା ଆବୁଲ୍ କାଲାମ୍ ଆଜାଦ୍, ମିଷ୍ଟର୍ ଆସଫ୍ ଅଲ୍ଲୀ, ଡକ୍ଟର ପ୍ରଫୁଲଚନ୍ଦ୍ର ଘୋଷ, ଶଙ୍କର ରାଓ ଦେଓ, ଡକ୍ଟର ପଟ୍ଟାଭି ସୀତା ରାମାୟା, ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଡକ୍ଟର ମାମୁଦ ଓ ଡକ୍ଟର କ୍ରିପାଲାନୀ ଆଦିଙ୍କୁ ବନ୍ଦୀ ଭାବେ ଏଠାରେ ରଖାଯାଇଥାଏ । ହରେକୃଷ୍ଣ ମହତାବଙ୍କୁ ଗିରଫ କରାଯାଇ ସେଠାକୁ ପଠାଇ ଦିଆଗଲା । ୧୯୪୨ ମସିହା

ଅଗଷ୍ଟ ମାସଠାରୁ ୧୯୪୫ ମସିହା ଅପ୍ରେଲ ମାସ ଯାଏ ମହତାବ ସେଠାରେ ବନ୍ଦୀ ହୋଇଥିଲେ ।

ଚାନ୍ଦବିବି କିଲ୍ଲାରେ ବନ୍ଦୀ ଭାବେ ଥିବା ସମୟର ଗୋଟିଏ ଛୋଟିଆ କଥା ହରେକୃଷ୍ଣ ମହତାବଙ୍କୁ ବନ୍ଦୀରୁ ଐତିହାସିକ କରିଦେଇଥିଲା । ଦିନେ ପଣ୍ଡିତ ନେହେରୁ ମହତାବ ବାବୁଙ୍କ କୋଠରୀକୁ ଦୌଡ଼ି ଆସିଲେ । ପ୍ରଶ୍ନ କଲେ "ତୁମେ ପୁରୀ ଜଗନ୍ନାଥଙ୍କର ଇତିହାସ କିଛି ଜାଣ ? ମୁଁ ଯେତେବେଳେ ପୁରୀ ଯାଇଥିଲି, ସେ ମୂର୍ତ୍ତି ଦେଖିଥିଲି । ମୋର ଦେହ ସେ ଦର୍ଶନରେ ଶିହରି ଉଠିଥିଲା । ସେ ମୂର୍ତ୍ତି କଅଣ ? ସେ ସମ୍ବନ୍ଧରେ ଜନଶ୍ରୁତି ବା କଅଣ ? କାହିଁକି ସେପରି ପୂଜା କରାଯାଉଛି ?" ସେଦିନ ମହତାବ ବାବୁଙ୍କ ପାଖରେ ସେ ପ୍ରଶ୍ନର ଉତ୍ତର କିଛି ନଥିଲା । ପଣ୍ଡିତ ନେହେରୁଙ୍କ ପ୍ରଶ୍ନର ଉତ୍ତର ଦେଇ ନ ପାରି ସେ ଲଜ୍ଜିତ ହୋଇଥିଲେ । ସେଇଦିନଠାରୁ ସେ ବନ୍ଧୁମାନଙ୍କ ସହିତ ଆଲୋଚନା କରି ଜଗନ୍ନାଥଙ୍କ ଇତିହାସ ଲେଖା ଆରମ୍ଭ କଲେ। ଏହି ବହିଟି ଲେଖିବା ପାଇଁ ତାଙ୍କୁ ଦୁଇବର୍ଷ କାଳ ଦିନକୁ ପ୍ରାୟ ବାରଘଣ୍ଟା ପରିଶ୍ରମ କରିବାକୁ ପଡୁଥିଲା ।

ପରେ ଜଗନ୍ନାଥ ଇତିହାସ "ଓଡ଼ିଶା ଇତିହାସ" ଭାବରେ ପ୍ରକାଶ ପାଇଲା । ଅହମଦ ନଗର ଫୋର୍ଟରେ ଥିବାବେଳେ ମହତାବ ବାବୁ ଏ ପୁସ୍ତକ ଛଡ଼ା ତିନୋଟି କାବ୍ୟ, ତିନୋଟି ଉପନ୍ୟାସ ଓ ବହୁ ଛୋଟ ବଡ଼ କବିତା ରଚନା କରିଥିଲେ । ଏସବୁ ଓଡ଼ିଆ ସାହିତ୍ୟ ଭଣ୍ଡାରର ଅମୂଲ୍ୟ ରତ୍ନ ।

୧୯୪୫ ମସିହା ଅପ୍ରେଲ ମାସରେ ମହତାବ ବାବୁଙ୍କୁ ଅହମଦନଗର ଫୋର୍ଟରୁ ସମ୍ବଲପୁର ଜେଲ୍‌କୁ ଅଣାଗଲା । ତା'ର କେତେଦିନ ପରେ ତାଙ୍କୁ ଜେଲ୍‌ରୁ ଖଲାସ କରି ଦିଆଗଲା । ଦେଶର ବଡ଼ ବଡ଼ ନେତାମାନେ ଗିରଫ ହୋଇଥିବାରୁ କଂଗ୍ରେସ ସଂଗଠନ ଦୁର୍ବଳ ହୋଇଯାଇଥାଏ । ଇଂରେଜ ସରକାର କଂଗ୍ରେସ ଅନୁଷ୍ଠନକୁ ବେଆଇନ ଘୋଷଣା କରିଥାନ୍ତି ।

ମହତାବ ବାବୁ ଜେଲ୍‌ରୁ ଖଲାସ ହେଲେ । ଆସି କଟକରେ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ଘରେ ରହିଲେ । ସେହି ସମୟରେ ତାଙ୍କର ବିଜୁ ପଟ୍ଟନାୟକ ଓ ବୀରେନ ମିତ୍ରଙ୍କ ସହିତ ସାକ୍ଷାତ ଓ ପରିଚୟ ହୋଇଥିଲା । ସେମାନଙ୍କର ଏ ସଂପର୍କ ପରେ ଓଡ଼ିଶା କଂଗ୍ରେସ ସଂଗଠନକୁ ଦୃଢ଼ କରିଥିଲା । ଏହାର କିଛି ଦିନ ପରେ ବ୍ରିଟିଶ ସରକାରଙ୍କ ସହିତ କଂଗ୍ରେସର ଆପୋଷ ଆଲୋଚନା ହେଲା । ଇଂରେଜମାନେ ଏ ଦେଶରୁ ଚାଲିଯିବେ ବୋଲି ଠିକ୍ ହେଲା ।

## ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ

ଦ୍ୱିତୀୟ ମହାଯୁଦ୍ଧ ପରର କଥା । ସେତେବେଳର ଭାରତ ସରକାରଙ୍କ ନିଷ୍ପତ୍ତି ଅନୁସାରେ ଦେଶର ଅନ୍ୟାନ୍ୟ ରାଜ୍ୟପରି ଓଡ଼ିଶା ବିଧାନ ସଭା ପାଇଁ ନିର୍ବାଚନ ହେଲା । "୧୯୩୫ ମସିହା ଭାରତ ଶାସନ ଆଇନ" ଅନୁସାରେ ଏହି ନିର୍ବାଚନ ହୋଇଥିଲା । ସେତେବେଳେ ଓଡ଼ିଶାର ଜିଲ୍ଲା ସଂଖ୍ୟା ଥିଲା ମାତ୍ର ଛଅ । ନିର୍ବାଚନ ମଣ୍ଡଳୀ ସଂଖ୍ୟା ଛପନ । ନିର୍ବାଚନ ପାଇଁ କୌଣସି ଚିହ୍ନ ବ୍ୟବହାର କରାଯାଉନଥିଲା । ବିଭିନ୍ନ ରଙ୍ଗର ବାକ୍ସ ରଖାଯାଉଥିଲା । ଲୋକେ

ନିଜ ପସନ୍ଦ ମୁତାବକ ପ୍ରାର୍ଥୀଙ୍କୁ ସେସବୁ ବାକ୍ସରେ ଭୋଟ ଦେଉଥିଲେ । ୫୬ ଟି ନିର୍ବାଚନ ସ୍ଥାନ ଛଡ଼ା ଅନ୍ୟ ଚାରୋଟି ଆସନରୁ ସଦସ୍ୟମାନେ ମନୋନୀତ ହେବାର ବ୍ୟବସ୍ଥା ଥିଲା! ।

୧୯୪୬ ମସିହା ଅପ୍ରେଲ ୪ ଓ ୫ ତାରିଖରେ ହୋଇଥିବା ନିର୍ବାଚନରେ ୫୬ଟି ଆସନରୁ ୩୭ଟିରେ କଂଗ୍ରେସ ପ୍ରାର୍ଥୀମାନେ ବିନା ଲଢ଼େଇରେ ଜିତି ଥିଲେ । ଅନ୍ୟ ୧୯ଟି ଆସନରେ ଲଢ଼େଇ ହୋଇଥିଲା । ସେଥିରୁ ୧୦ଟି ଆସନ କଂଗ୍ରେସ ପାଇଥିଲା । ମହତାବଙ୍କ ନେତୃତ୍ୱରେ ଓଡ଼ିଶାରେ ଏକ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା । ସେ ପ୍ରଧାମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ କଲେ । ସେତେବେଳେ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା ।

ମହତାବ ବାବୁ ୧୯୪୬ ମସିହା ଅପ୍ରେଲ ମାସରୁ ୧୯୫୦ ମସିହା ମେ' ମାସ ଯାଏ ଓଡ଼ିଶାର ପ୍ରଧାନମନ୍ତ୍ରୀ ଥିଲେ । ଏହି ସମୟରେ ଦୁଇଟି ମୁଖ୍ୟ ଘଟଣା ଘଟିଥିଲା । ସେଥିପାଇଁ ସେ ଓଡ଼ିଶାବାସୀଙ୍କ ନିକଟରେ ସବୁଦିନେ ଅମର ରହିଥିବେ ।

ସେତେବେଳେ ନଈ ବଢ଼ି ଓଡ଼ିଶା ପାଇଁ ଥିଲା ଗୋଟିଏ ବଡ଼ ବିପତ୍ତି । ରାଜ୍ୟର ସବୁ ନଈରେ ବନ୍ୟା ଆସି ହଜାର ହଜାର ଗାଁ ଗଣ୍ଡାରେ ବହୁତ କ୍ଷତି କରୁଥିଲା । ଲୋକଙ୍କ ଘରଦ୍ୱାର ଭାଙ୍ଗିବା ସହ ଚାଷ ଜମିରେ ବାଲି ମାଡ଼ି ଯାଉଥିଲା । ପ୍ରତିବର୍ଷ ଶହ ଶହ ଧନ ଜୀବନ ବିପନ୍ନ ହେଉଥିଲା । ଦେଶ ତ ପରାଧୀନ । ଲୋକଙ୍କ ଦୁଃଖ ବୁଝିବ କିଏ ? ଓଡ଼ିଶାରେ ସବୁଠାରୁ ବଡ଼ ନଦୀ ମହାନଦୀ । ମହାନଦୀର ବନ୍ୟାରେ ସବୁଠାରୁ ଅଧିକ କ୍ଷତି ହେଉଥିଲା । କିପରି ଏଥିରୁ ଲୋକଙ୍କୁ ରକ୍ଷା କରାଯାଇପାରିବ ? ମହତାବ ବାବୁ ଜେଲରେ ଥାଇ ଚିନ୍ତା

କରୁଥାନ୍ତି । ସମ୍ବଲପୁର ଜେଲ୍‌ରୁ ଖଲାସ ହୋଇ କଟକ ଆସିବା ଆଗରୁ ତାଙ୍କୁ ସମ୍ବର୍ଦ୍ଧନା ଦିଆଯାଇଥିଲା । ସେହି ସମ୍ବର୍ଦ୍ଧନାର ଉତ୍ତରରେ ସେ ମହାନଦୀ ବନ୍ୟାକୁ ରୋକିବା ପାଇଁ କାର୍ଯ୍ୟ କରିବେ ବୋଲି ଘୋଷଣା କରିଥିଲେ । କଥା ଅନୁସାରେ କାର୍ଯ୍ୟ ଚାଲିଲା ।

ଓଡ଼ିଶାର ଲାଟ ସାହେବ ଥାଆନ୍ତି ସାର୍ ହାଥର୍ଣ୍ଣ ଲୁଇସ୍ । ୧୯୪୫ ମସିହା ମାର୍ଚ୍ଚ ୧୫ ତାରିଖ । ଏଦିନ ଓଡ଼ିଶାର ଲାଟ୍ ହୀରାକୁଦ ବନ୍ଧର ପ୍ରଥମ ଶୁଭ ଦେଇଥିଲେ ।

ଶୁଭ ସିନା ଦିଆ ହୋଇଗଲା । ହେଲେ ଟଙ୍କା କୁଆଡୁ ଆସିବ ? ସେତେବେଳେ ଓଡ଼ିଶାର ଆୟ କେନ୍ଦ୍ର ସାହାଯ୍ୟ ମିଶି ଦୁଇକୋଟିଟଙ୍କାରୁ କମ୍ । ଦେଶ ସ୍ୱାଧୀନ ହୋଇ ନଥାଏ । କୌଣସି ଯୋଜନା କାର୍ଯ୍ୟକାରୀ ହୋଇ ନଥାଏ । ଯୁଦ୍ଧ ପରର ଅବସ୍ଥାକୁ ସମ୍ଭାଳିବା ପାଇଁ ଯେତିକି ଦରକାର କେବଳ ସେତିକି ମିଳୁଥାଏ । ଏପରି ଅବସ୍ଥାରେ ହୀରାକୁଦ ବନ୍ଧ ତିଆରି ପାଇଁ ବହୁତ ଅସୁବିଧା ଦେଖାଦେଇଥିଲା । ଶେଷରେ ଟଙ୍କା ଯୋଗାଡ଼ ହେଲା । ହୀରାକୁଦ ବନ୍ଧ ତିଆରି ହେଲା ।

**ଗଡ଼ଜାତ ମିଶ୍ରଣ**

ମହ୍‌ତାବ ବାବୁଙ୍କ ଶାସନ ବେଳେ ଓଡ଼ିଶା ସହିତ ଗଡ଼ଜାତ ଗୁଡ଼ିକର ମିଶ୍ରଣ ହୋଇଥିଲା । ୧୯୩୬ ମସିହା ଅପ୍ରେଲ ପହିଲାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲା । ପରେ ଯେତେବେଳେ ଦେଶ ସ୍ୱାଧୀନ ହେଲା, ମହତାବ ବାବୁଙ୍କ ଉଦ୍ୟମରେ ଓଡ଼ିଶାର ଗଡ଼ଜାତ ରାଜ୍ୟଗୁଡ଼ିକ ଓଡ଼ିଶାରେ ମିଶିଲା । ସେତେବେଳେ ଓଡ଼ିଶାରେ ଥିଲା ଛଅଟି ଜିଲ୍ଲା ।

ସେହି ସମୟରେ ରାଜା-ରାଜୁଡ଼ାମାନେ ଗଡ଼ଜାତରେ ମନଇଚ୍ଛା ଶାସନ ଚଳାଇ ଥିଲେ । ପ୍ରଜାମାନଙ୍କ ଉପରେ ନାନାପ୍ରକାର ଅତ୍ୟାଚାର କରୁଥିଲେ । ଏହାର ପ୍ରତିବାଦରେ ୧୯୩୭ ମସିହା ଜୁନ ୨୪ ତାରିଖରେ ଓଡ଼ିଶାର ଗଡ଼ଜାତ ପ୍ରଜାମାନଙ୍କର ଗୋଟିଏ ସମ୍ମିଳନୀ କଟକଠାରେ ବସିଲା । ଡକ୍ଟର ପଟ୍ଟାଭି ସୀତାରାମେୟା ସଭାପତି ହୋଇଥିଲେ । ଦେଶୀୟ ରାଜ୍ୟମାନଙ୍କରେ ସ୍ୱାୟତ୍ତ ଶାସନ ପ୍ରତିଷ୍ଠା ପାଇଁ ଏ ସମ୍ମିଳନୀରେ ଦାବି ହୋଇଥିଲା । ଓଡ଼ିଶା ଗଡ଼ଜାତମାନଙ୍କରେ ଚାଲିଥିବା ଜୁଲମ ଓ ଅତ୍ୟାଚାରର ତଦନ୍ତ ପାଇଁ ମଧ୍ୟ ଦାବି ହୋଇଥିଲା । ଏହାର ପ୍ରତିକାର ପାଇଁ ହରେକୃଷ୍ଣ ମହତାବଙ୍କ ଅଧ୍ୟକ୍ଷତାରେ ଗୋଟିଏ ତିନିଜଣିଆ କମିଟି ଗଠନ କରାଯାଇଥିଲା । ଗୁଜୁରାଟର ନେତା ବଳବନ୍ତ ରାୟ ମେହେଟା ଓ ଓଡ଼ିଶାର ଲାଲମୋହନ ପଟ୍ଟନାୟକ ଏହି କମିଟିର ସଦସ୍ୟ ଥିଲେ । ପ୍ରଜା ଆନ୍ଦୋଳନର ନେତା ସାରଙ୍ଗଧର ଦାସ ଏହି କମିଟିର ସଂପାଦକ ଥିଲେ ।

ଏହି କମିଟି ବିଭିନ୍ନ ସ୍ଥାନ ବୁଲି ଗଡ଼ଜାତ ମାନଙ୍କରେ ଘଟୁଥିବା ଅତ୍ୟାଚାର ବିଷୟରେ ତଦନ୍ତ କରିଥିଲେ । ସେ ସଂପର୍କରେ ଗୋଟିଏ ରିପୋର୍ଟ ଦେଇଥିଲେ । ଗଡ଼ଜାତଗୁଡ଼ିକ ଓଡ଼ିଶା ପ୍ରଦେଶ ସହିତ ମିଶାଇ ଦେବା ପାଇଁ ସୁପାରିଶ ମଧ୍ୟ କରିଥିଲେ । କିନ୍ତୁ ପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଲାଗିଗଲା । ଏହି ସୁପାରିଶ ଉପରେ କୌଣସି କାର୍ଯ୍ୟକ୍ରମ ଗ୍ରହଣ କରାଯାଇ ନଥିଲା ।

୧୯୪୬ ମସିହା ଅପ୍ରେଲ ମାସରେ କ୍ୟାବିନେଟ ମିଶନ ଭାରତକୁ

ଆସିଥିଲେ । ସେତେବେଳେ ଦେଶୀୟ ରାଜ୍ୟଗୁଡ଼ିକ ଓଡ଼ିଶାରେ ମିଶାଇବା ପାଇଁ ମହତାବ ବାବୁ ଗୋଟିଏ ସ୍ମାରକ ପତ୍ର କମିଶନଙ୍କୁ ଦେଇଥିଲେ । ଏହି ସ୍ମାରକ ପତ୍ରରେ ସେ ଖୁବ୍ ଦୃଢ଼ ଭାବରେ ତାଙ୍କର ଯୁକ୍ତି ଦର୍ଶାଇଥିଲେ ।

୧୯୪୭ ମସିହା ଡିସେମ୍ବର ମାସ ୧୪ ତାରିଖ । ଏହା ଓଡ଼ିଶା ପାଇଁ ଏକ ସ୍ମରଣୀୟ ଦିବସ । ଏହାର ଆଗଦିନ ସର୍ଦ୍ଦାର ପଟେଲ ଓଡ଼ିଶା ଆସିଥିଲେ । ସେ କଟକଠାରେ ଥିବା ରାଜଭବନରେ ଓଡ଼ିଶାର ସବୁ ଗଡ଼ଜାତ ଶାସକମାନଙ୍କର ବୈଠକ ଡକାଇଲେ । ଏହି ବୈଠକରେ ସର୍ଦ୍ଦାର ଭାରତ ସରକାରଙ୍କ ମନୋଭାବ ସେମାନଙ୍କୁ ଜଣାଇଥିଲେ । ଏହାପରେ ଆଉ ଡେ଼ରି ନ କରି ଗଡ଼ଜାତ ଶାସକମାନେ ତା' ପରଦିନ ଅର୍ଥାତ୍ ଡ଼ିସେମ୍ବର ୧୪ ତାରିଖ ଦିନ ମିଶ୍ରଣ ପ୍ରସ୍ତାବରେ ଦସ୍ତଖତ କରିଦେଲେ । ଏହାର ୧୭ ଦିନ ପରେ ୧୯୪୮ ମସିହା ଜାନୁଆରୀ ପହିଲା ଦିନ ଓଡ଼ିଶାର ୨୩ଟି ଗଡ଼ଜାତ ଓଡ଼ିଶାରେ ମିଶିଗଲେ । ଏହାର ବର୍ଷକ ପରେ ମୟୂରଭଞ୍ଜ ରାଜ୍ୟ ଓଡ଼ିଶା ସହିତ ସାମିଲ ହେଲା । ମହତାବ ବାବୁଙ୍କ ଭଳି ଦୃଢ଼ମନା ବ୍ୟକ୍ତିଙ୍କ ଯୋଗୁଁ ଏହା ସମ୍ଭବ ହୋଇଥିଲା ।

## ପ୍ରଥମ କେନ୍ଦ୍ରମନ୍ତ୍ରୀ

ସ୍ୱାଧୀନତା ଆନ୍ଦୋଳନବେଳୁ ମହତାବବାବୁଙ୍କର ବହୁ ଜାତୀୟ ନେତାମାନଙ୍କ ସହିତ ସଂପର୍କ ଥିଲା । ଅହମଦ ନଗର ଦୁର୍ଗରେ ବନ୍ଦୀ ଥିବା ବେଳେ ତାଙ୍କର ପଣ୍ଡିତ ନେହେରୁଙ୍କ ସହିତ ଘନିଷ୍ଠ ସଂପର୍କ ହୋଇଥିଲା ।

ସେତେବେଳେ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ହୋଇଥିଲେ ପଣ୍ଡିତ ଜବାହରଲାଲ୍ ନେହେରୁ । ମହତାବ ବାବୁଙ୍କ କାର୍ଯ୍ୟ ଦକ୍ଷତାରେ ଖୁସି ହୋଇ ପଣ୍ଡିତଜୀ ତାଙ୍କୁ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଯୋଗ ଦେବାକୁ ଅନୁରୋଧ କଲେ । ସେ ପଣ୍ଡିତ ନେହେରୁଙ୍କ ଅନୁରୋଧ ରକ୍ଷା କଲେ । ଓଡ଼ିଶାର ପ୍ରଧାନମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । କେନ୍ଦ୍ରରେ ଶିଳ୍ପ ଓ ବାଣିଜ୍ୟ ମନ୍ତ୍ରୀଭାବେ ନେହେରୁଙ୍କ ମନ୍ତ୍ରିମଣ୍ଡଳରେ ଯୋଗ ଦେଲେ ।

ତାଙ୍କ ଆଗରୁ କେନ୍ଦ୍ରରେ ମନ୍ତ୍ରୀ ହେବାର ସୁଯୋଗ ଓଡ଼ିଶାରେ ଆଉ କାହାକୁ ମିଳିନଥିଲା । ସେ ସଂବିଧାନ ବିଧାୟକ ସଭାର ସଦସ୍ୟ ଥିଲେ । ତେଣୁ କେନ୍ଦ୍ରରେ ମନ୍ତ୍ରୀ ହେବାର ଅସୁବିଧା ହୋଇନଥିଲା । କେନ୍ଦ୍ରରେ ମହତାବ ବାବୁ ଦୁଇବର୍ଷ ମନ୍ତ୍ରୀ ରହିବା ପରେ ସମ୍ବିଧାନ ପ୍ରଥା ଅନୁଯାୟୀ ଦେଶରେ ପ୍ରଥମ ସାଧାରଣ ନିର୍ବାଚନ ହେଲା । ଏହା ୧୯୫୧ ମସିହାର କଥା । ହରେକୃଷ୍ଣ ମହତାବ କଂଗ୍ରେସ ପ୍ରାର୍ଥୀ ଭାବରେ କଟକ ଲୋକସଭା ଆସନରୁ ନିର୍ବାଚନ ଲଢ଼ି ନିର୍ବାଚିତ ହୋଇଥିଲେ ।

ଏହି ନିର୍ବାଚନରେ କଂଗ୍ରେସ ଦଳ ସଂଖ୍ୟା ଗରିଷ୍ଠତା ଲାଭ କଲା । କେନ୍ଦ୍ରରେ ସରକାର ଗଠିତ ହେଲା । ହେଲେ ମହତାବ ବାବୁ ଆଉ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଯୋଗଦେଇ ନଥିଲେ । ସେତେବେଳେ ସେ କଂଗ୍ରେସ ସଂସଦୀୟ ଦଳର ସେକ୍ରେଟେରୀ ଜେନେରାଲ୍ ହୋଇଥିଲେ । ଏହି ପଦବୀରେ ଦୁଇ ବର୍ଷ ସେ ରହିଥିଲେ । ମହତାବ ବାବୁଙ୍କ ପରେ ଏହି ପଦବୀଟି ଉଠିଯାଇଥିଲା ।

## ପ୍ରଥମ ଓଡ଼ିଆ ରାଜ୍ୟପାଳ

୧୯୫୫ ମସିହାର କଥା । ମହତାବ ବାବୁ ତାଙ୍କର କର୍ମକ୍ଷେତ୍ର ବିହାରୀବାଗସ୍ଥ 'ପ୍ରଜାତନ୍ତ୍ର' ହତାରେ ରହୁଥାନ୍ତି । ଖବର ମିଳିଲା ଯେ ରାଷ୍ଟ୍ରପତିଙ୍କ ଦ୍ୱାରା ସେ ବମ୍ବେ ରାଜ୍ୟର ରାଜ୍ୟପାଳ ନିଯୁକ୍ତ ହୋଇଛନ୍ତି । ବର୍ତ୍ତମାନ ଗୁଜୁରାଟ ଓ ମହାରାଷ୍ଟ୍ର ରାଜ୍ୟକୁ ମିଶାଇ ସେତେବେଳେ ବମ୍ବେ ରାଜ୍ୟ ଥିଲା । ବମ୍ବେ ରାଜ୍ୟର ଖୁବ୍ ମର୍ଯ୍ୟାଦା ଥିଲା । ଦିଲ୍ଲୀ ଭାରତବର୍ଷର ରାଜନୈତିକ ରାଜଧାନୀ ହୋଇଥିଲେ ହେଁ ବମ୍ବେକୁ ବାଣିଜ୍ୟ ରାଜଧାନୀ ବୋଲି କୁହାଯାଉଥିଲା । ସେ ସମୟରେ ବମ୍ବେ ରାଜ୍ୟର ରାଜ୍ୟପାଳ ହେବାଖବର ଶୁଣି ଯେ କୌଣସି ବ୍ୟକ୍ତି ଖୁସିରେ ନାଚି ଉଠିଥାଆନ୍ତେ । କିନ୍ତୁ ମହତାବ ବାବୁଙ୍କ ପକ୍ଷରେ ସେପରି କୌଣସି ଭାବାନ୍ତର ଦେଖିବାକୁ ମିଳିନଥିଲା । ସେ କୌଣସି ପ୍ରତିକ୍ରିୟା ପ୍ରକାଶ କରିନଥିଲେ । ବରଂ ନମ୍ରତାର ସହିତ ସେ ବମ୍ବେ ରାଜ୍ୟପାଳ ପଦବୀ ଗ୍ରହଣ କରିଥିଲେ ।

ମହତାବ ବାବୁଙ୍କ ଆଗରୁ ଏପରି ବଡ଼ ଆସନ କେହି ଓଡ଼ିଶାରେ ପାଇ ନଥିଲେ । ବମ୍ବେ ରାଜ୍ୟର ରାଜ୍ୟପାଳ ଥିବାବେଳେ ସେ ବହୁତ ମୌଳିକ ସମସ୍ୟାର ସମାଧାନ କରି ପାରିଥିଲେ । ଏଥିପାଇଁ ସେ ଲୋକପ୍ରିୟ ହୋଇପାରିଥିଲେ ।

ବମ୍ବେ ରାଜଭବନ ଭିତରେ ସମସ୍ତ ପ୍ରକାର ସୁଖ-ସୁବିଧାରେ ରହି ସୁଦ୍ଧା ତାଙ୍କ ମନ ସବୁବେଳେ ଓଡ଼ିଶାବାସୀଙ୍କ ପାଖରେ ଥିଲା । ସେତେବେଳେ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି ।

ସେତିକିବେଳେ ଓଡ଼ିଶାରେ କେତେଗୁଡ଼ିଏ ଘଟଣା ଘଟିଗଲା । ଯାହା ଫଳରେ ମହତାବ ବାବୁ ନବବାବୁଙ୍କ ଜାଗାରେ ବମ୍ବେରୁ ଆସି ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ ।

**ମୁଖ୍ୟମନ୍ତ୍ରୀତ୍ୱ ଗ୍ରହଣ**

୧୯୫୫ ଅକ୍ଟୋବର ମାସ ୧୯ ତାରିଖରେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । ପରେ ମହତାବବାବୁ ବମ୍ବେ ରାଜ୍ୟପାଳ ପଦରୁ ଇସ୍ତଫା ଦେଇ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେଲେ ।

ଏହାର ପ୍ରାୟ ଦେଢ଼ବର୍ଷ ଭିତରେ ୧୯୫୭ ମସିହା ଫେବୃଆରୀ ମାସରେ ଓଡ଼ିଶା ବିଧାନ ସଭା ପାଇଁ ନିର୍ବାଚନ ହେଲା । ଏହି ନିର୍ବାଚନ ଆଗରୁ ସୀମା ଆନ୍ଦୋଳନ, ଦଳେଇ ଘାଇ ବନ୍ୟା ଓ ଆଉ କେତେକ କାରଣରୁ ଶାସନ କଂଗ୍ରେସ ଦଳ ଉପରେ ଲୋକେ ବିରକ୍ତ ହୋଇଥାନ୍ତି । ସେଥିପାଇଁ ନିର୍ବାଚନରେ କଂଗ୍ରେସ ଦଳ ୧୪୦ଟି ଆସନରୁ ୫୬ଟି ଆସନ ପାଇଥିଲା । କେତେକ ସ୍ୱାଧୀନ ସଦସ୍ୟ ଓ ଝାଡ଼ଖଣ୍ଡ ଦଳର ସମର୍ଥନରେ ଡକ୍ଟର ହରେକୃଷ୍ଣ ମହତାବ ଅପ୍ରେଲମାସ ପ୍ରଥମ ସପ୍ତାହରେ ନୂତନ ମନ୍ତ୍ରୀମଣ୍ଡଳ ଗଢ଼ିଲେ । ସରକାରୀ ଦଳ ଓ ମିଳିତ ବିରୋଧୀ ଦଳ ଭିତରେ ସେତେବେଳେ ତଫାତ୍ କମ୍ ଥିଲା ।

**କଂଗ୍ରେସ୍-ଗଣତନ୍ତ୍ର ପରିଷଦ ମିଳିତ ମନ୍ତ୍ରିମଣ୍ଡଳ**

ବିଧାନ ସଭାରେ ଥିଲେ ମୁଖ୍ୟ ବିରୋଧୀ ଦଳ ଗଣତନ୍ତ୍ର

## ପ୍ରଥମ ଓଡ଼ିଆ ରାଜ୍ୟପାଳ

୧୯୫୫ ମସିହାର କଥା । ମହତାବ ବାବୁ ତାଙ୍କର କର୍ମକ୍ଷେତ୍ର ବିହାରୀବାଗସ୍ଥ 'ପ୍ରଜାତନ୍ତ୍ର' ହତାରେ ରହୁଥାନ୍ତି । ଖବର ମିଳିଲା ଯେ ରାଷ୍ଟ୍ରପତିଙ୍କ ଦ୍ୱାରା ସେ ବମ୍ବେ ରାଜ୍ୟର ରାଜ୍ୟପାଳ ନିଯୁକ୍ତ ହୋଇଛନ୍ତି । ବର୍ତ୍ତମାନ ଗୁଜୁରାଟ ଓ ମହାରାଷ୍ଟ୍ର ରାଜ୍ୟକୁ ମିଶାଇ ସେତେବେଳେ ବମ୍ବେ ରାଜ୍ୟ ଥିଲା । ବମ୍ବେ ରାଜ୍ୟର ଖୁବ୍ ମର୍ଯ୍ୟାଦା ଥିଲା । ଦିଲ୍ଲୀ ଭାରତବର୍ଷର ରାଜନୈତିକ ରାଜଧାନୀ ହୋଇଥିଲେ ହେଁ ବମ୍ବେକୁ ବାଣିଜ୍ୟ ରାଜଧାନୀ ବୋଲି କୁହାଯାଉଥିଲା । ସେ ସମୟରେ ବମ୍ବେ ରାଜ୍ୟର ରାଜ୍ୟପାଳ ହେବାଖବର ଶୁଣି ଯେ କୌଣସି ବ୍ୟକ୍ତି ଖୁସିରେ ନାଚି ଉଠିଥାଆନ୍ତେ । କିନ୍ତୁ ମହତାବ ବାବୁଙ୍କ ପକ୍ଷରେ ସେପରି କୌଣସି ଭାବାନ୍ତର ଦେଖିବାକୁ ମିଳିନଥିଲା । ସେ କୌଣସି ପ୍ରତିକ୍ରିୟା ପ୍ରକାଶ କରିନଥିଲେ । ବରଂ ନମ୍ରତାର ସହିତ ସେ ବମ୍ବେ ରାଜ୍ୟପାଳ ପଦବୀ ଗ୍ରହଣ କରିଥିଲେ ।

ମହତାବ ବାବୁଙ୍କ ଆଗରୁ ଏପରି ବଡ଼ ଆସନ କେହି ଓଡ଼ିଶାରେ ପାଇ ନଥିଲେ । ବମ୍ବେ ରାଜ୍ୟର ରାଜ୍ୟପାଳ ଥିବାବେଳେ ସେ ବହୁତ ମୌଳିକ ସମସ୍ୟାର ସମାଧାନ କରି ପାରିଥିଲେ । ଏଥିପାଇଁ ସେ ଲୋକପ୍ରିୟ ହୋଇପାରିଥିଲେ ।

ବମ୍ବେ ରାଜଭବନ ଭିତରେ ସମସ୍ତ ପ୍ରକାର ସୁଖ-ସୁବିଧାରେ ରହି ସୁଦ୍ଧା ତାଙ୍କ ମନ ସବୁବେଳେ ଓଡ଼ିଶାବାସୀଙ୍କ ପାଖରେ ଥିଲା । ସେତେବେଳେ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି ।

ସେତିକିବେଳେ ଓଡ଼ିଶାରେ କେତେଗୁଡ଼ିଏ ଘଟଣା ଘଟିଗଲା । ଯାହା ଫଳରେ ମହତାବ ବାବୁ ନବବାବୁଙ୍କ ଜାଗାରେ ବମ୍ବେରୁ ଆସି ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ ।

**ମୁଖ୍ୟମନ୍ତ୍ରୀତ୍ୱ ଗ୍ରହଣ**

୧୯୫୬ ଅକ୍ଟୋବର ମାସ ୧୯ ତାରିଖରେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । ପରେ ମହତାବବାବୁ ବମ୍ବେ ରାଜ୍ୟପାଳ ପଦରୁ ଇସ୍ତଫା ଦେଇ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେଲେ ।

ଏହାର ପ୍ରାୟ ଦେଢ଼ବର୍ଷ ଭିତରେ ୧୯୫୭ ମସିହା ଫେବୃଆରୀ ମାସରେ ଓଡ଼ିଶା ବିଧାନ ସଭା ପାଇଁ ନିର୍ବାଚନ ହେଲା । ଏହି ନିର୍ବାଚନ ଆଗରୁ ସୀମା ଆନ୍ଦୋଳନ, ଦଲେଇ ଘାଇ ବନ୍ୟା ଓ ଆଉ କେତେକ କାରଣରୁ ଶାସନ କଂଗ୍ରେସ ଦଳ ଉପରେ ଲୋକେ ବିରକ୍ତ ହୋଇଥାନ୍ତି । ସେଥିପାଇଁ ନିର୍ବାଚନରେ କଂଗ୍ରେସ ଦଳ ୧୪୦ଟି ଆସନରୁ ୫୬ଟି ଆସନ ପାଇଥିଲା । କେତେକ ସ୍ୱାଧୀନ ସଦସ୍ୟ ଓ ଝାଡ଼ଖଣ୍ଡ ଦଳର ସମର୍ଥନରେ ଡକ୍ଟର ହରେକୃଷ୍ଣ ମହତାବ ଅପ୍ରେଲମାସ ପ୍ରଥମ ସପ୍ତାହରେ ନୂତନ ମନ୍ତ୍ରୀମଣ୍ଡଳ ଗଢ଼ିଲେ । ସରକାରୀ ଦଳ ଓ ମିଳିତ ବିରୋଧୀ ଦଳ ଭିତରେ ସେତେବେଳେ ତଫାତ୍ କମ୍ ଥିଲା ।

**କଂଗ୍ରେସ-ଗଣତନ୍ତ୍ର ପରିଷଦ ମିଳିତ ମନ୍ତ୍ରିମଣ୍ଡଳ**

ବିଧାନ ସଭାରେ ଥିଲେ ମୁଖ୍ୟ ବିରୋଧୀ ଦଳ ଗଣତନ୍ତ୍ର

ପରିଷଦ । ସେମାନେ ସବୁବେଳେ ସରକାରଙ୍କ ପାଇଁ ଅସୁବିଧା ସୃଷ୍ଟି କରୁଥାନ୍ତି । ଏପରି ଅବସ୍ଥାରେ କଂଗ୍ରେସ ଦଳ ପକ୍ଷରେ ସରକାର ଚଳାଇବା ଦିନ୍‌କୁ ଦିନ ଅସୁବିଧା ହେଉଥିଲା । ଏପରିକି ଥରେ ବିଧାନ ସଭା ଭିତରେ ସରକାର ଗୋଟିଏ ବିଲ୍ ଆଣିଲା ବେଳେ ତା ବିପକ୍ଷରେ ବହୁମତ ହୋଇଗଲା । ଫଳରେ ସରକାର ହାରିଗଲେ ।

ଏହି ଘଟଣା ପରେ ଓଡ଼ିଶାର ରାଜନୀତିରେ କେତେକ ପରିବର୍ତ୍ତନର ସୂଚନା ମିଳିଲା । ରାଜ୍ୟ ଶାସନରେ ସ୍ଥିରତା ଆଣିବା ପାଇଁ ମୁଖ୍ୟମନ୍ତ୍ରୀ ବିଧାନ ସଭା ଭିତରେ ବିରୋଧୀ ଦଳର ସାହାଯ୍ୟ ଲୋଡ଼ିଲେ । ଓଡ଼ିଶାର ରାଜନୈତିକ ପରିସ୍ଥିତି ବିଷୟରେ କେନ୍ଦ୍ରର ନେତାମାନଙ୍କୁ ଜଣାଇ ଦିଆଯାଇଥିଲା । ବହୁ ବିଚାର ଆଲୋଚନା ପରେ ୧୯୫୯ ମେ ମାସରେ କଂଗ୍ରେସ ଓ ଗଣତନ୍ତ୍ର ପରିଷଦର ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହେଲା । ମିଳିତ ମନ୍ତ୍ରିମଣ୍ଡଳକୁ କେନ୍ଦ୍ର କରି କଂଗ୍ରେସ ଦଳ ଭିତରେ ଭିନ୍ନ ମତ ପ୍ରକାଶ ପାଇଲା । ଫଳରେ ମନ୍ତ୍ରିମଣ୍ଡଳ ଭାଙ୍ଗିଗଲା ।

**କ୍ଷମତା ବାହାରେ ଡକ୍ଟର ମହତାବ**

ମହତାବ ବାବୁ ମିଳିତ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଲେ । ଫଳରେ ଓଡ଼ିଶାରେ ଅଳ୍ପଦିନ ପାଇଁ ରାଷ୍ଟ୍ରପତି ଶାସନ ଜାରି ହେଲା । ସେହି ବର୍ଷ ଜୁନ୍ ମାସରେ ମଧ୍ୟବର୍ତ୍ତୀ କାଳୀନ ନିର୍ବାଚନ ହେଲା । ମହତାବ ବାବୁ ରାଜ୍ୟ ବିଧାନସଭା ପାଇଁ ନ ଲଢ଼ି ତା'ପରେ ଅନୁଷ୍ଠିତ ହୋଇଥିବା ଲୋକସଭା ନିର୍ବାଚନରେ ଅନୁଗୋଳ ଆସନରୁ ଛିଡ଼ା ହୋଇ ବିନା ଲଢ଼େଇରେ ଜିତିଥିଲେ । ପାର୍ଲିଆମେଣ୍ଟ ସଦସ୍ୟ ଥିବା ସମୟରେ

ଡକ୍ଟର ମହତାବ ଦୁଇବର୍ଷ ପାଇଁ କଂଗ୍ରେସ ସଂସଦୀୟ ଦଳର ଉପନେତା ଥିଲେ । ଭାରତୀୟ ସଂସଦୀୟ ଦଳର ନେତୃତ୍ୱ ନେଇ ସେ ବହୁ ବିଦେଶୀ ରାଷ୍ଟ୍ର ପରିଦର୍ଶନରେ ଯାଇଥିଲେ ।

ଏହାପରେ ୧୯୬୬ ମସିହାରେ ସେ କଂଗ୍ରେସ ଦଳରୁ ଇସ୍ତଫା ଦେଲେ । ଓଡ଼ିଶାରେ 'ଜନକଂଗ୍ରେସ' ଦଳ ଗଠନ ହେଲା । ସେଥିରେ ସେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ୧୯୬୭ ମସିହା ବିଧାନସଭା ନିର୍ବାଚନ ପରେ ଜନକଂଗ୍ରେସ ଓ ସ୍ୱତନ୍ତ୍ର ଦଳ ମିଶି ମିଳିତ ମନ୍ତ୍ରୀମଣ୍ଡଳ ଗଢ଼ିଥିଲେ । ଡକ୍ଟର ମହତାବ ଏହି ନିର୍ବାଚନରେ ଉଭୟ ଭୁବନେଶ୍ୱର ଓ ଭଦ୍ରଖ ଆସନରୁ ଜିଣିଥିଲେ । ପରେ ସେ ଭୁବନେଶ୍ୱର ବିଧାନ ସଭା ଆସନରୁ ଇସ୍ତଫା ଦେଇଥିଲେ । ଭୁବନେଶ୍ୱର ଉପନିର୍ବାଚନରେ ତାଙ୍କ ପତ୍ନୀ ଶ୍ରୀମତୀ ସୁଭଦ୍ରା ମହତାବ ଜିତି ବିଧାନ ସଭାକୁ ଆସିଲେ ।

୧୯୭୧ ମସିହାରେ ସେ ଶ୍ରୀମତୀ ଇନ୍ଦିରା ଗାନ୍ଧିଙ୍କ ଡାକରାରେ ପୁଣି କଂଗ୍ରେସ ଦଳକୁ ଫେରି ଆସିଥିଲେ । ବିଧାନସଭା ନିର୍ବାଚନରେ ଅଂଶଗ୍ରହଣ କରି ଉଭୟ ଭୁବନେଶ୍ୱର ଓ ଭଦ୍ରଖ ଆସନରୁ ଜୟଲାଭ କରିଥିଲେ । ପରେ ସେ ଅନ୍ୟ ଆସନରୁ ଇସ୍ତଫା ଦେଇ ଭୁବନେଶ୍ୱର ଆସନଟି ରଖିଥିଲେ ।

ସେହିଭଳି ୧୯୭୪ ମସିହାରେ ସେ ଭୁବନେଶ୍ୱର ଆସନରୁ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ଡକ୍ଟର ମହତାବ ଜୀବନରେ କୌଣସି ରାଜନୈତିକ ନିର୍ବାଚନରେ ହାରି ନଥିଲେ । ରାଜନୈତିକ କୁସ୍ତିରେ ସେ ବଡ଼ ବଡ଼ ପହେଲମାନମାନଙ୍କୁ ଚିତ୍ କରି ଦେଇଛନ୍ତି । ତାଙ୍କୁ ହରାଇବା ପାଇଁ କେହି କେବେ ସକ୍ଷମ ହୋଇ ନାହାନ୍ତି ।

ରାଜନୀତିରେ ଡକ୍ଟର ମହତାବ ଜଣେ ବିଚକ୍ଷଣ ବ୍ୟକ୍ତି ଭାବେ ଜଣାଶୁଣା ଥିଲେ । ଓଡ଼ିଶା ରାଜନୀତିର ପାଣି ପବନ ସହିତ ସେ ବେଶ୍ ପରିଚିତ ଥିଲେ । ଜନମତକୁ ସଂଗଠିତ କରିବାରେ ତାଙ୍କର ଅସାଧାରଣ ଶକ୍ତି ଥିଲା ।୧୯୬୧ ମସିହାରୁ ସେ କୌଣସି ରାଜନୈତିକ ପଦ-ପଦବୀ ଗ୍ରହଣ କରି ନଥିଲେ । ହେଲେ ଓଡ଼ିଶାର ରାଜନୈତିକ କ୍ଷେତ୍ରରେ ତାଙ୍କର ସ୍ଥିତି ବଦଳି ନଥିଲା । ଲୋକେ ତାଙ୍କ ମତକୁ ଖାତିର୍ କରୁଥିଲେ ।

**ଜରୁରୀ ପରିସ୍ଥିତି ଓ ପୁନର୍ବାର ଜେଲ୍‌ଯାତ୍ରା**

୧୯୭୫ ମସିହା ଜୁନ୍ ମାସ ୨୫ ତାରିଖ । ସେହିଦିନ ରାତିରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧି ଦେଶରେ ଜରୁରୀ ପରିସ୍ଥିତି ଜାରି କଲେ । ଦେଶର ଆଭ୍ୟନ୍ତରୀଣ ନିରାପତ୍ତା ବିପନ୍ନ ହୋଇଛି କହି ସଂବିଧାନକୁ ରଦ୍ଦ କରି ଦିଆଗଲା । ସେଥି ସହିତ ସାଧାରଣ ନାଗରିକଙ୍କର ମୌଳିକ ଅଧିକାରକୁ କାଢ଼ି ନିଆଗଲା । କଥା ସେଇଠି ଅଟକିଲା ନାହିଁ । ଖବର କାଗଜ ଉପରେ ବି ଅଙ୍କୁଶ ଲଗାଇ ଦିଆଗଲା । ସେଥି ସହିତ ଦେଶର ଅଣ-କଂଗ୍ରେସ ନେତାମାନଙ୍କୁ ରାତାରାତି ଗିରଫ କରାଗଲା । ସେମାନଙ୍କୁ ଜେଲ୍‌ରେ ପୂରାଇ ଦିଆଗଲା । କିଏ କେଉଁଠି ବନ୍ଦୀ ହୋଇ ରହିଲେ ସେ କଥା କେହି ଜାଣି ପାରିଲେ ନାହିଁ ।

ସେତେବେଳେ ଓଡ଼ିଶାରେ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ନେତୃତ୍ୱରେ କଂଗ୍ରେସ ସରକାର ଚାଲିଥାଏ । ଓଡ଼ିଶାରେ ବି ରାତି ଅଧିଆ ଗିରଫଦାରୀ ଚାଲିଲା । ପୂର୍ବତନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ

ଓ ଡକ୍ଟର ହରେକୃଷ୍ଣ ମହତାବଙ୍କ ଭଳି ପୁରୁଖା ନେତାମାନଙ୍କୁ ଗିରଫ କରି ନିଆଗଲା ।

ଡକ୍ଟର ମହତାବ ଭୁବନେଶ୍ୱରସ୍ଥ ତାଙ୍କ 'ଏକାମ୍ର ନିବାସ'ରୁ ଗିରଫ ହେଲେ । ତାଙ୍କୁ ପ୍ରଥମେ ଫୁଲବାଣୀ ଜେଲକୁ ନିଆଗଲା । ପୋଲିସ୍ ଆସି ତାଙ୍କୁ ଗିରଫ କରିବା ଆଗରୁ ଡକ୍ଟର ମହତାବ ଏକ ପ୍ରକାର ପ୍ରସ୍ତୁତ ହୋଇ ରହିଥିଲେ । ସେଥିପାଇଁ ସେ ବ୍ୟସ୍ତ ହୋଇ ନ ଥିଲେ । ତାଙ୍କୁ ପରେ ଭଞ୍ଜନଗର ଏବଂ ଶେଷରେ ଭୁବନେଶ୍ୱରସ୍ଥ କେନ୍ଦ୍ରୀୟ ଜେଲ୍‌ରେ ପନ୍ଦରମାସରୁ ଅଧିକ କାଳ ବନ୍ଦୀ ଭାବେ ରଖାଯାଇଥିଲା ।

୧୯୬୬ ମସିହାରେ ପ୍ରଧାନମନ୍ତ୍ରୀ ଲାଲ୍‌ବାହାଦୁର ଶାସ୍ତ୍ରୀଙ୍କ ଅକାଳ ବିୟୋଗ ଘଟିଥିଲା । ଏତିକି ବେଳେ ଇନ୍ଦିରାଗାନ୍ଧିଙ୍କୁ ପ୍ରଧାନମନ୍ତ୍ରୀ କରାଇବାରେ ଡକ୍ଟର ମହତାବ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଏଗାର ବର୍ଷ ପରେ ସେଇ ଇନ୍ଦିରାଗାନ୍ଧି ପ୍ରଧାନମନ୍ତ୍ରୀ ଥିଲାବେଳେ ତାଙ୍କୁ ବିନା ଅପରାଧରେ ଜେଲ୍‌ଦଣ୍ଡ ହୋଇଥିଲା । ଏ ଘଟଣା ଡକ୍ଟର ମହତାବଙ୍କୁ ବହୁତ ବାଧିଥିଲା । ଜରୁରୀ ପରିସ୍ଥିତିର ଜେଲ୍ ଜୀବନ ଭିତରେ ଡକ୍ଟର ମହତାବ 'ତୃତୀୟ ପର୍ବ' ବୋଲି ଗୋଟିଏ ଉପନ୍ୟାସ ଓ ଆଉ କେତେକ ବହି ଲେଖିଥିଲେ । ଜେଲ୍‌ରୁ ଖଲାସ ହେବା ପରେ ସେ ଆଉ ସକ୍ରିୟ ରାଜନୀତିରେ ଭାଗ ନେଇ ନ ଥିଲେ । ଲେଖାଲେଖି ଓ ସମାଜ ଗଠନରେ ମନ ଦେଇଥିଲେ ।

**ସାମ୍ବାଦିକତା**

ଆମରାଜ୍ୟରେ ସ୍ୱାଧୀନତା ଆନ୍ଦୋଳନ ଚାଲିଥିଲା । ଏତିକି ବେଳେ ମହତାବ ବାବୁ 'ପ୍ରଜାତନ୍ତ୍ର' ନାମରେ ଗୋଟିଏ ସାପ୍ତାହିକ

ରାଜନୀତିରେ ଡକ୍ଟର ମହତାବ ଜଣେ ବିଚକ୍ଷଣ ବ୍ୟକ୍ତି ଭାବେ ଜଣାଶୁଣା ଥିଲେ । ଓଡ଼ିଶା ରାଜନୀତିର ପାଣି ପବନ ସହିତ ସେ ବେଶ୍ ପରିଚିତ ଥିଲେ । ଜନମତକୁ ସଂଗଠିତ କରିବାରେ ତାଙ୍କର ଅସାଧାରଣ ଶକ୍ତି ଥିଲା ।୧୯୬୧ ମସିହାରୁ ସେ କୌଣସି ରାଜନୈତିକ ପଦ-ପଦବୀ ଗ୍ରହଣ କରି ନଥିଲେ । ହେଲେ ଓଡ଼ିଶାର ରାଜନୈତିକ କ୍ଷେତ୍ରରେ ତାଙ୍କର ସ୍ଥିତି ବଦଳି ନଥିଲା । ଲୋକେ ତାଙ୍କ ମତକୁ ଖାତିର୍ କରୁଥିଲେ ।

**ଜରୁରୀ ପରିସ୍ଥିତି ଓ ପୁନର୍ବାର ଜେଲ୍‌ଯାତ୍ରା**

୧୯୭୫ ମସିହା ଜୁନ୍ ମାସ ୨୫ ତାରିଖ । ସେହିଦିନ ରାତିରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧି ଦେଶରେ ଜରୁରୀ ପରିସ୍ଥିତି ଜାରି କଲେ । ଦେଶର ଆଭ୍ୟନ୍ତରୀଣ ନିରାପତ୍ତା ବିପନ୍ନ ହୋଇଛି କହି ସଂବିଧାନକୁ ରଦ୍ଦ କରି ଦିଆଗଲା । ସେଥି ସହିତ ସାଧାରଣ ନାଗରିକଙ୍କର ମୌଳିକ ଅଧିକାରକୁ କାଢ଼ି ନିଆଗଲା । କଥା ସେଇଠି ଅଟକିଲା ନାହିଁ । ଖବର କାଗଜ ଉପରେ ବି ଅଙ୍କୁଶ ଲଗାଇ ଦିଆଗଲା । ସେଥି ସହିତ ଦେଶର ଅଣ-କଂଗ୍ରେସ ନେତାମାନଙ୍କୁ ରାତାରାତି ଗିରଫ କରାଗଲା । ସେମାନଙ୍କୁ ଜେଲ୍‌ରେ ପୂରାଇ ଦିଆଗଲା । କିଏ କେଉଁଠି ବନ୍ଦୀ ହୋଇ ରହିଲେ ସେ କଥା କେହି ଜାଣି ପାରିଲେ ନାହିଁ ।

ସେତେବେଳେ ଓଡ଼ିଶାରେ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ନେତୃତ୍ୱରେ କଂଗ୍ରେସ ସରକାର ଚାଲିଥାଏ । ଓଡ଼ିଶାରେ ବି ରାତି ଅଧିଆ ଗିରଫଦାରୀ ଚାଲିଲା । ପୂର୍ବତନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ

ଓ ଡକ୍ଟର ହରେକୃଷ୍ଣ ମହତାବଙ୍କ ଭଳି ପୁରୁଖା ନେତାମାନଙ୍କୁ ଗିରଫ କରି ନିଆଗଲା ।

ଡକ୍ଟର ମହତାବ ଭୁବନେଶ୍ୱରସ୍ଥ ତାଙ୍କ 'ଏକାମ୍ର ନିବାସ'ରୁ ଗିରଫ ହେଲେ । ତାଙ୍କୁ ପ୍ରଥମେ ଫୁଲବାଣୀ ଜେଲକୁ ନିଆଗଲା । ପୋଲିସ୍ ଆସି ତାଙ୍କୁ ଗିରଫ କରିବା ଆଗରୁ ଡକ୍ଟର ମହତାବ ଏକ ପ୍ରକାର ପ୍ରସ୍ତୁତ ହୋଇ ରହିଥିଲେ । ସେଥିପାଇଁ ସେ ବ୍ୟସ୍ତ ହୋଇ ନ ଥିଲେ । ତାଙ୍କୁ ପରେ ଭଞ୍ଜନଗର ଏବଂ ଶେଷରେ ଭୁବନେଶ୍ୱରସ୍ଥ କେନ୍ଦ୍ରୀୟ ଜେଲ୍‌ରେ ପନ୍ଦରମାସରୁ ଅଧିକ କାଳ ବନ୍ଦୀ ଭାବେ ରଖାଯାଇଥିଲା ।

୧୯୬୬ ମସିହାରେ ପ୍ରଧାନମନ୍ତ୍ରୀ ଲାଲ୍‌ବାହାଦୁର ଶାସ୍ତ୍ରୀଙ୍କ ଅକାଳ ବିୟୋଗ ଘଟିଥିଲା । ଏତିକି ବେଳେ ଇନ୍ଦିରାଗାନ୍ଧିଙ୍କୁ ପ୍ରଧାନମନ୍ତ୍ରୀ କରାଇବାରେ ଡକ୍ଟର ମହତାବ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଏଗାର ବର୍ଷ ପରେ ସେଇ ଇନ୍ଦିରାଗାନ୍ଧି ପ୍ରଧାନମନ୍ତ୍ରୀ ଥିଲାବେଳେ ତାଙ୍କୁ ବିନା ଅପରାଧରେ ଜେଲ୍‌ଦଣ୍ଡ ହୋଇଥିଲା । ଏ ଘଟଣା ଡକ୍ଟର ମହତାବଙ୍କୁ ବହୁତ ବାଧିଥିଲା । ଜରୁରୀ ପରିସ୍ଥିତିର ଜେଲ୍ ଜୀବନ ଭିତରେ ଡକ୍ଟର ମହତାବ 'ତୃତୀୟ ପର୍ବ' ବୋଲି ଗୋଟିଏ ଉପନ୍ୟାସ ଓ ଆଉ କେତେକ ବହି ଲେଖିଥିଲେ । ଜେଲ୍‌ରୁ ଖଲାସ ହେବା ପରେ ସେ ଆଉ ସକ୍ରିୟ ରାଜନୀତିରେ ଭାଗ ନେଇ ନ ଥିଲେ । ଲେଖାଲେଖି ଓ ସମାଜ ଗଠନରେ ମନ ଦେଇଥିଲେ ।

**ସାମ୍ବାଦିକତା :**

ଆମରାଜ୍ୟରେ ସ୍ୱାଧୀନତା ଆନ୍ଦୋଳନ ଚାଲିଥିଲା । ଏତିକି ବେଳେ ମହତାବ ବାବୁ 'ପ୍ରଜାତନ୍ତ୍ର' ନାମରେ ଗୋଟିଏ ସାପ୍ତାହିକ

ପତ୍ରିକା ପ୍ରକାଶ କରୁଥିଲେ । ସେ ଜେଲ୍ ଚାଲିଯିବାରୁ କାଗଜଟି ନିୟମିତ ବାହାରି ପାରିଲା ନାହିଁ । ହେଲେ ଭବିଷ୍ୟତରେ ଏ ସମ୍ବାଦପତ୍ରକୁ ବାହାର କରିବା ପାଇଁ ତାଙ୍କର ଖୁବ୍ ଇଚ୍ଛା ଥାଏ । ୧୯୪୬ ମସିହାରେ ସେ ଓଡ଼ିଶା ପ୍ରଧାନମନ୍ତ୍ରୀ ଦାୟିତ୍ୱ ନେବା ପରେ ଏ ଦିଗରେ ଅଧିକ ମନ ବଳାଇଲେ । ଶାସକଦଳ ଓ ଶାସନକଳକୁ ସମର୍ଥନ ଜଣାଇବା ପାଇଁ ଗୋଟିଏ ଖବର କାଗଜ ଦରକାର । ଏକଥା ଡକ୍ଟର ମହତାବ ଭଲ ଭାବରେ ବୁଝିଥିଲେ ।

ଦେଶ ସ୍ୱାଧୀନ ହେବାର ସାତ ଦିନ ଆଗରୁ ଡକ୍ଟର ମହତାବ କଟକରୁ 'ସାପ୍ତାହିକ ପ୍ରଜାତନ୍ତ୍ର'କୁ 'ଦୈନିକ ପ୍ରଜାତନ୍ତ୍ର' ଭାବେ ପ୍ରକାଶ କଲେ । ପ୍ରଥମରୁ ଏ ସମ୍ବାଦପତ୍ର ସହିତ ଭୈରବଚନ୍ଦ୍ର ମହାନ୍ତି, ନୀଳମଣି ରାଉତରାୟ, ବିରେନ୍ ମିତ୍ର, ମାୟାଧର ମହାନ୍ତି, ନାରାୟଣ ରଥ ଓ ଆର୍. ପି. ଶାସ୍ତ୍ରୀ ସଂପୃକ୍ତ ଥିଲେ । ପରେ ଜାନକୀବଲ୍ଲଭ ପଟ୍ଟନାୟକ, ଶ୍ରୀହର୍ଷ ମିଶ୍ର ଓ ଚିନ୍ତାମଣି ପାଣିଗ୍ରାହୀ ଆଦି ସଂପାଦକ ଭାବେ ସେଥିରେ ଯୋଗ ଦେଇଥିଲେ । ସମ୍ବାଦପତ୍ର ବିଭିନ୍ନ ଶ୍ରେଣୀର ପାଠକମାନଙ୍କୁ ଖୋରାକ ଯୋଗାଇବା ଦରକାର । ଏହି ଉଦ୍ଦେଶ୍ୟରେ ପ୍ରଥମଥର ପାଇଁ ସେ ପ୍ରଜାତନ୍ତ୍ରରେ କେତୋଟି ନୂଆ ବିଭାଗ ଖୋଲିଲେ । ଏହି ସବୁ ବିଭାଗଗୁଡ଼ିକ ହେଲା ମୀନା ବଜାର, ନାରୀ ଜଗତ, ରୂପ-ରସ-ଛନ୍ଦ, ସାହିତ୍ୟ ବିଭାଗ ଓ କ୍ରୀଡ଼ା ଜଗତ ଇତ୍ୟାଦି । ପରେ ପ୍ରଜାତନ୍ତ୍ର ଏକ ଅନୁଷ୍ଠାନରେ ପରିଣତ ହେଲା । ସେ ଏହାର ନାମ ରଖିଲେ 'ପ୍ରଜାତନ୍ତ୍ର ପ୍ରଚାର ସମିତି' । ଏହି ଅନୁଷ୍ଠାନକୁ ଚଳାଇବାରେ ସର୍ବଶ୍ରୀ ବିଶ୍ୱମ୍ଭର ପରିଡ଼ା, ଅକ୍ଷୟ କୁମାର ଦାସ, ରାମ ପ୍ରସାଦ ମହାନ୍ତି,

ସାଗର ଚରଣ ମହାପାତ୍ର ଆଦି କଠିନ ପରିଶ୍ରମ କରି ଡକ୍ଟର ମହତାବଙ୍କୁ ସାହାଯ୍ୟ କରିଥିଲେ ।

ପରେ "ପ୍ରଜାତନ୍ତ୍ର ପ୍ରଚାର" ସମିତି ପକ୍ଷରୁ ଇଷ୍ଟର୍ଣ୍ଣ ଟାଇମ୍‌ସ ନାମରେ ଗୋଟିଏ ଇଂରେଜୀ ପତ୍ରିକା ପ୍ରକାଶ ପାଇଲା । ପ୍ରଜାତନ୍ତ୍ରରେ ଛପା ହେଉଥିବା ମୀନା ବଜାର ଏକ ନୂଆ ପତ୍ରିକା ଭାବରେ ବାହାରିଲା । ଏହା ଛଡ଼ା ଝଙ୍କାର ନାମରେ ଗୋଟିଏ ମାସିକ ସାହିତ୍ୟ ପତ୍ରିକା ଡକ୍ଟର ମହତାବଙ୍କ ନିଜ ଉଦ୍ୟମରେ ପ୍ରକାଶ ପାଇଲା । ନିଜର ରାଜନୈତିକ ଜୀବନର ସମସ୍ତ ବାଦବିବାଦ ଓ ଉତ୍‌ଥାନ ପତନ ସତ୍ତ୍ୱେ ସେ ଝଙ୍କାରକୁ ସବୁ ବିବାଦରୁ ଦୂରରେ ରଖିଥିଲେ । ତାଙ୍କ ବିଚାରରେ "ଘରେ ସମସ୍ତ ପ୍ରକାର କାର୍ଯ୍ୟ ହୁଏ - ଭଲ ଓ ମନ୍ଦ, ପବିତ୍ର ଓ ଅପବିତ୍ର । କିନ୍ତୁ ଠାକୁର ଘର କଥା ଅଲଗା । ଯେଉଁଠାରେ ଦେବତାଙ୍କର ଉପାସନା କରାଯାଏ, ତାହା ଭିତରେ ଅଶୁଚି ଅବସ୍ଥାରେ କେହି ପଶିବାକୁ ମନା । ସେହିପରି ସାହିତ୍ୟ ଭିତରକୁ ପଙ୍କିଳ ରାଜନୀତି ଆଣିବା ଅବାଞ୍ଛନୀୟ ।"

ଦୈନିକ ପ୍ରଜାତନ୍ତ୍ରରେ ନିଜ ନାଁରେ 'ଗାଁ ମଜଲିସ' ସ୍ତମ୍ଭରେ ସାମାଜିକ ସମସ୍ୟାକୁ ସେ ଖୁବ୍ ଭଲ ଭାବରେ ପ୍ରକାଶ କରୁଥିଲେ । ଏହା ଆଉ କେଉଁଠି ଦେଖିବାକୁ ମିଳେ ନାହିଁ । ଘଟଣା କ୍ରମେ "ଗାଁ ମଜଲିସ୍" ଓଡ଼ିଶାର ଜନମତର ବାହକ ହୋଇଗଲା । ସେଥିରେ ପ୍ରକାଶିତ ଲେଖା ଲୋକଙ୍କ ମନକୁ ବେଶ୍ ଛୁଇଁଥିଲା । ଗାଁ ମଜଲିସ କେଉଁଦିନ ବାହାରିବ ତାକୁ ପଢ଼ିବା ପାଇଁ ଲୋକେ ଅପେକ୍ଷା କରି ରହୁଥିଲେ ।

## ସାହିତ୍ୟ ସାଧନା

ଗୋଟିଏ କଲେଜର କଥା । ଥରେ କେତେକ ପିଲା ଚା' ପର୍ବ ଶେଷ କରି ଖୁସି ଗପରେ ମାତିଥାନ୍ତି । କେତେ ଆଡୁ କେତେ କଥା ଢିଙ୍କିଶାଳରୁ ଢେଙ୍କାନାଳ ଯାଏ । ଗପ ଭିତରେ ମହତାବଙ୍କ କଥା ଆସିଗଲା । କିଏ କହିଲା ସେ ବଡ଼ ରାଜନୀତି ବାଲା, ଆଉ କାହା ମତ ସେ ଜଣେ ବଡ଼ ସାହିତ୍ୟିକ । ଭିନ୍ନ ଭିନ୍ନ ପିଲାଙ୍କର ଭିନ୍ନ ଭିନ୍ନ ମତ । ଶେଷରେ କଥା ଅଧ୍ୟାପକଙ୍କ ପାଖକୁ ଗଲା । ସେ ସରଳରେ କଥାଟା ବୁଝାଇ ଦେଲେ । ସେ କହିଲେ, ''ଡକ୍ଟର ହରେକୃଷ୍ଣ ମହତାବ କେଉଁ ଗୁଣରେ କମ୍ ନୁହନ୍ତି । ସେ ଯେମିତି ବଡ଼ ରାଜନୀତିଜ୍ଞ, ସେମିତି ବଡ଼ ସାହିତ୍ୟିକ । ତାଙ୍କର ଯେଉଁ ବଡ଼ପଣିଆ ବିଷୟରେ ଯେତିକି ଜାଣିଛି ସେତିକି କହୁଛି ।''

ମହତାବ ବାବୁ ଯେତେ ବେଳେ ଯେଉଁପରି ଭାବରେ ଥାଆନ୍ତୁ ନା କାହିଁକି ଲେଖାପଢ଼ାକୁ ସେ ଛାଡ଼ି ପାରୁ ନ ଥିଲେ । ୧୯୪୨ ମସିହାରେ ଅହମଦ ନଗର ଦୁର୍ଗରେ ବନ୍ଦୀ ଥିଲାବେଳେ ସେ ''ଓଡ଼ିଶା ଇତିହାସ'' ଲେଖିଥିଲେ । ଏହାର ଦୀର୍ଘ ତେତିଶ ବର୍ଷ ପରେ ଦେଶର ଜରୁରୀ ପରିସ୍ଥିତିରେ ବନ୍ଦୀ ଥିବା ବେଳେ ସେ ଲେଖିଥିଲେ ''ତୃତୀୟ ପର୍ବ' । ତାଙ୍କର ଆଉ କେତେକ ଲେଖା ହେଲା, 'ପୁଣ୍ୟାତ୍ମା ଗୋପବନ୍ଧୁ', 'ଚଷା ଭାଇ', 'ପଲାସୀ ଅବସାନେ', 'ଅଜବ ଦୁନିଆ', 'ନିଗଡ଼ ନିଶ୍ୱନ୍', 'ସ୍ୱରାଜ୍ୟ ସାଧନ', 'ସାଧନା ପଥେ', 'ପ୍ରତିଭା', 'ଟାଉଟର', 'ଦୁର୍ଭିକ୍ଷ', 'ଗାଁ ମାଟି', 'ଗାଁ ଟାଉଟର', 'ଅବ୍ୟାପାର', 'ଫ୍ରିଡ଼ମ୍ ମୁଭ୍‌ମେଣ୍ଟ ଅଫ୍ ଓଡ଼ିଶା' ଓ 'ହ୍ୱାଇଲ୍ ସର୍‌ଭିଂ ମାଇଁ କନ୍‌ଟ୍ରି' ।

ତାଙ୍କର ସବୁ ଲେଖାରେ ସମାଜର ନିତିଦିନର ଘଟଣା ପୂରି ରହିଥିଲା । ସମାଜରେ ଚାଲିଥିବା କୁପ୍ରଥା ଓ ଅନ୍ଧ ବିଶ୍ୱାସ ବିରୁଦ୍ଧରେ ସେ ଲେଖୁଥିଲେ । 'ଝଂକାର'ର ଆରମ୍ଭ ହୋଇଥିଲା ବିଷୁବ ସଂକ୍ରାନ୍ତିରେ । ଏହି ଉପଲକ୍ଷ୍ୟେ ପ୍ରତି ବର୍ଷ ସେହି ସମୟରେ ବିଷୁବ ମିଳନ ଉତ୍ସବ ହୁଏ । ଏହା ଓଡ଼ିଶାର ସାହିତ୍ୟ ଜଗତକୁ ଡକ୍ଟର ମହତାବଙ୍କର ସବୁଠାରୁ ବଡ଼ ଦାନ । ଆଜିକାଲି ଓଡ଼ିଶାର ବଡ଼ ବଡ଼ କବି ବା ସାହିତ୍ୟିକମାନଙ୍କ ଭିତରୁ ଅନେକ 'ଝଙ୍କାର'ରେ ଲେଖା ଆରମ୍ଭ କରିଥିଲେ । ଲୋକେ ବିଚାର କରୁଥିଲେ ଯେ, 'ଝଙ୍କାର'ରେ ଲେଖାଟିଏ ପ୍ରକାଶ ପାଇବା ବଡ଼ ଭାଗ୍ୟର କଥା ।

ଆମ ଓଡ଼ିଶାରେ ପଣାସଂକ୍ରାନ୍ତି ଗୋଟିଏ ବଡ଼ ପର୍ବ । ଏହାର ଅନ୍ୟ ନାଁ ବିଷୁବ ସଂକ୍ରାନ୍ତି । ଏହି ବିଷୁବ ସଂକ୍ରାନ୍ତିରେ ସାହିତ୍ୟିକ ଓ ସାହିତ୍ୟକୁ ଭଲ ପାଉଥିବା ଲୋକମାନେ ଏକାଠି ମିଳିତ ହେଉଥିବାରୁ ଏହି ଉତ୍ସବକୁ ବିଷୁବ ମିଳନ କୁହାଯାଏ । ସାଧାରଣତଃ ଅପ୍ରେଲ ମାସ ୧୩ କିମ୍ବା ୧୪ ତାରିଖରେ ପଣା ସଂକ୍ରାନ୍ତି ପଡ଼େ । ଏହାର ଦୁଇ ଦିନ ଆଗରୁ କଟକର ବିହାରୀବାଗ୍‌ରେ ବିଷୁବ ମିଳନ ପାଇଁ ଭିଡ଼ ଆରମ୍ଭ ହୁଏ । ସବୁ ରକମର ଲୋକ ଆସନ୍ତି । କବି, ଲେଖକ, ସାମ୍ବାଦିକ, ସମାଜ ସେବୀ, ସରକାରୀ ଚାକିରିଆ ଏମିତି କେତେ କିସମର ଲୋକ ।

'ପ୍ରଜାତନ୍ତ୍ର ପ୍ରଚାର ସମିତି' ଆରମ୍ଭ ହେବା ଆଗରୁ ବିହାରୀବାଗ୍‌ରେ ଥିଲା ଗୋଟିଏ ବଡ଼ ବଗିଚା ଓ ଗୋଟିଏ ପୋଖରୀ । କାଶ୍ମୀରରୁ ଆସିଥିବା ବିହାରୀଲାଲ୍ ପଣ୍ଡିତ ସେ ବଗିଚାର ମାଲିକ

ଥିଲେ । ତାଙ୍କରି ନାଁ ଅନୁସାରେ ବଗିଚାର ନାଁ ଥିଲା ବିହାରୀବାଗ୍ । କ୍ରମେ ସେ ଜାଗାର ନାମ ମଧ ହୋଇଗଲା ବିହାରୀବାଗ୍ । ଏବେ ବି ସେ ନାଁ ବଦଳି ନାହିଁ । କେବଳ ବଗିଚା ଓ ପୋଖରୀ ଜାଗାରେ କୋଠାବାଡ଼ି ତିଆରି ହୋଇଛି । ସେଇଠି ସବୁ ବର୍ଷ ଏହି ବିଷୁବ ମିଳନ ହୁଏ । ତିନିଦିନଯାକ ମହତାବବାବୁ ସେଠି ରହୁଥିଲେ । ସମସ୍ତଙ୍କୁ ଆଦର କରୁଥିଲେ । ତାଙ୍କର ସାନ ବଡ଼ କିଛି ବାରଣ ନ ଥିଲା ।

ସେମିତି ରାଷ୍ଟ୍ରଭାଷା ପ୍ରଚାର ସଭା କଥା । ହିନ୍ଦୀକୁ ଭାରତ ବର୍ଷର ରାଜଭାଷା ଭାବେ ଚଳାଇବା ପାଇଁ ନିଷ୍ପତ୍ତି ହୋଇଥିଲା । ତା'ର ବହୁ ଆଗରୁ ଡକ୍ଟର ମହତାବ ହିନ୍ଦୀର ପ୍ରଚାର ଓ ପ୍ରସାର ପାଇଁ ଚେଷ୍ଟା କରିଥିଲେ । ତାଙ୍କରି ଚେଷ୍ଟାରେ ପଣ୍ଡିତ ଅନସୂୟା ପ୍ରସାଦ ପାଠକଙ୍କ ଦ୍ୱାରା କଟକରେ ରାଷ୍ଟ୍ରଭାଷା ସମବାୟ ସମିତି ୧୯୪୮ ମସିହାରୁ ଗଢ଼ା ହୋଇଥିଲା ।

ଓଡ଼ିଶା ସାହିତ୍ୟ ଏକାଡ଼େମୀ ଗୋଟିଏ ସରକାରୀ ଅନୁଷ୍ଠାନ । ଡକ୍ଟର ମହତାବ ବହୁଦିନ ଧରି ଏହାର ସଭାପତି ଥିଲେ । ତାଙ୍କରି ସମୟରେ ଓଡ଼ିଶାର ବିଭିନ୍ନ ସ୍ଥାନରୁ ବହୁ ପୋଥି ପୁରାଣ ସଂଗ୍ରହ କରାଯାଇ ସେ ସବୁ ଛପା ଯାଇଥିଲା ।

## ସଂସ୍କୃତି, କଳା ଓ କ୍ରୀଡ଼ାକୁ ଦାନ

ଡକ୍ଟର ମହତାବଙ୍କ ଉଦ୍ୟମରେ କଟକରେ 'କଳା ବିକାଶ କେନ୍ଦ୍ର' ପ୍ରତିଷ୍ଠିତ ହୋଇଥିଲା । ଓଡ଼ିଶୀ ନାଚକୁ ବାହାରେ ଜଣାଶୁଣା କରାଇବାରେ ଏହି ଅନୁଷ୍ଠାନର ଦାନ ବହୁତ ।

ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ ଓ ଲଳିତ କଳା ଏକାଡ଼େମୀର ମଧ୍ୟ ସେ ଥିଲେ ସଭାପତି । ଓଡ଼ିଶାର ପ୍ରାଚୀନ କଳା ଓ ସଂସ୍କୃତିକୁ ଲୋକଲୋଚନକୁ ଆଣିବାରେ ତାଙ୍କର ବଡ଼ ଅବଦାନ ରହିଛି ।

ଓଡ଼ିଶାର ଗାଁ ଗହଳରେ ପାଠାଗାର ବସେଇବାରେ ତାଙ୍କର ଦାନ ଥିଲା ବହୁତ । ତାଙ୍କ ଶାସନ କାଳରେ ଓଡ଼ିଶାରେ ଗୋଟିଏ ପାଠାଗାର ଆନ୍ଦୋଳନ ହୋଇଥିଲା । ଫଳରେ ବିଭିନ୍ନ ସ୍ଥାନରେ ପାଠାଗାରମାନ ଗଢ଼ି ଉଠିଥିଲା ।

ସୁନ୍ଦର ଶରୀର ଗଠନ ଉପରେ ସେ ସବୁବେଳେ ଜୋର୍ ଦେଉଥିଲେ । ବ୍ୟାୟାମ, ଯୋଗ ଅଭ୍ୟାସ ପାଇଁ ତାଙ୍କର ଦାନ ଭୁଲିବାର ନୁହେଁ । କଟକଠାରେ କଳିଙ୍ଗ ବ୍ୟାୟାମ ବିଦ୍ୟାଳୟ ବସିଥିଲା । ସେଥିପାଇଁ ତାଙ୍କ ଦାନ ଭୁଲି ହେବ ନାହିଁ ।

ଡକ୍ଟର ମହତାବ ଓଡ଼ିଶାର ପ୍ରଧାନମନ୍ତ୍ରୀ ହେବାଯାଏ ରାଜ୍ୟର ଖେଳକୁଦ କଥା କେହି ଭାବୁ ନ ଥିଲେ । ଫଳରେ ଓଡ଼ିଶାର କୌଣସି ଖେଳାଳି ଜାତୀୟସ୍ତରରେ ଖେଳିବାକୁ ସୁଯୋଗ ପାଉ ନ ଥିଲେ । ହେଲେ ସେତେବେଳେ କଟକ ସହରରେ ଫୁଟବଲ୍ ଖେଳାଳିଙ୍କର ଅଭାବ ନ ଥିଲା । ସାଇବସ୍ତିରେ ଖେଳାଳି ପୂରି ରହି ଥିଲେ । ଭଲ ଖେଳ ପଡ଼ିଆ ନ ଥିଲା । ପ୍ରେରଣାର ଅଭାବ ଥିଲା । ଫଳରେ ବଣମଲ୍ଲୀ ପରି ଖେଳାଳିମାନେ କଟକ ସହର ଭିତରେ ରହିଯାଉଥିଲେ ।

ସେତେବେଳେ କଟକ ସହରରେ ଥିଲା ଅନେକ କ୍ଲବ । ସେମାନଙ୍କ ଭିତରେ ଫୁଟବଲ ଖେଳ 'ବାଲିଯାତ୍ରା ପଡ଼ିଆ'ରେ

ହେଉଥିଲା । ପଡ଼ିଆର ଚାରିପାଖେ ବାଉଁଶତାଟି ଘେରା ହେଉ ଥିଲା । ପଡ଼ିଆ ଭିତରକୁ ଖେଳ ଦେଖିବାକୁ ଯିବାକୁ ହେଲେ ଦି'ଅଣା ପଇସା ଦେଇ ଟିକେଟ୍ କରିବାକୁ ପଡୁଥିଲା । ଲୋକେ ପଡ଼ିଆରେ ତଳେ ବସି ଖେଳ ଦେଖୁଥିଲେ ।

ଏହାକୁ ବଦଳାଇବା ପାଇଁ ପ୍ରଧାନମନ୍ତ୍ରୀ ଭାବେ ମହତାବ ବାବୁ ଚିନ୍ତାକଲେ । ତାଙ୍କ ଚିନ୍ତାକୁ କାମରେ ପରିଣତ କରିବା ପାଇଁ କେତେକ ଯୁବକ ବାହାରି ପଡ଼ିଲେ । ଯାହା ହେଉ, ଓଡ଼ିଶା ଅଲମ୍ପିକ ଆସୋସିଏସନ୍ ଗଠିତ ହେଲା ।

ଆସୋସିଏସନ୍ ସିନା ଗଠିତ ହେଲା, ହେଲେ ଖେଳ କୁଦ ହେବ କେଉଁଠି ? ଏ ପ୍ରଶ୍ନ ସମସ୍ତଙ୍କ ମନକୁ ଆସିଲା । ଖୁବ୍ ଆଲୋଚନା ହେଲା । ଶେଷକୁ ଠିକ୍ ହେଲା କିଲ୍ଲା ପଡ଼ିଆକୁ ଅଲମ୍ପିକ୍ ଆସୋସିଏସନ୍‌କୁ ଦିଆଯିବ । ଏ ନିଷ୍ପତ୍ତି ହେବାର ଦୁଇ ମାସ ଭିତରେ ୨୦ ଏକର ଖାସମହାଲ ଜମି ଆସୋସିଏସନ୍‌କୁ ମିଳିଗଲା । ଜମି ମିଳିବା ପରେ କଥା ଉଠିଲା ଷ୍ଟାଡ଼ିଅମ୍ କିପରି ତିଆରି ହେବ ? ଏତେ ଟଙ୍କା କୁଆଡୁ ମିଳିବ ? ଷ୍ଟାଡ଼ିଅମ୍ ହେଲେ ତା' ନାଁ କ'ଣ ରହିବ ?

ଡକ୍ଟର ମହତାବ ସେତେବେଳେ ଓଡ଼ିଶାର ପ୍ରଧାନମନ୍ତ୍ରୀ ଥାଆନ୍ତି । ସେ ତୁରନ୍ତ ଏ ସବୁ ସମସ୍ୟାର ସମାଧାନ କରିଦେଲେ । ସେ ପ୍ରସ୍ତାବ ଦେଲେ ଷ୍ଟାଡ଼ିଅମ୍‌ର ନାମ ବାରବାଟୀ ଷ୍ଟାଡ଼ିଅମ୍ ରଖାଯିବ । ତାହାହିଁ ହେଲା । ଷ୍ଟାଡ଼ିଅମ୍ ତିଆରି ପାଇଁ ଟଙ୍କା ଯୋଗାଡ଼ କରିବାକୁ ତାଙ୍କ ପରାମର୍ଶରେ ଲଟେରୀ ଚାଲୁ କରାଗଲା । ଏଥିରୁ ଯାହା ଆଦାୟ ହେଲା ସେଥିରେ ଏହି ବାରବାଟୀ ଷ୍ଟାଡ଼ିଅମ୍ ତିଆରି ହେଲା । ଆଜି ହୁଏତ ଏହି ଷ୍ଟାଡ଼ିୟମ୍‌କୁ ଦେଖି ଏକଥା ବିଶ୍ୱାସ କରି ହେବ ନାହିଁ ।

କଟକ ସ୍ୱରାଜ୍ୟ ଆଶ୍ରମ । ସ୍ୱାଧୀନତା ଆନ୍ଦୋଳନର ଏହା ମୂଳ ପୀଠ । ଜାତିର ପିତା ମହାତ୍ମା ଗାନ୍ଧି ତାଙ୍କ ପଦ ଯାତ୍ରା ବେଳେ ସେଠାରେ ବିଶ୍ରାମ ନେଇଥିଲେ । ସ୍ୱାଧୀନତା ପରେ କଂଗ୍ରେସ ଦଳ ଭାଗ ଭାଗ ହେବା ଯାଏ ସେଠାରେ ରାଜନୈତିକ କାମ ଜୋର୍‌ସୋର୍‌ରେ ଚାଲୁଥିଲା । ମହତାବ ବାବୁ ଚେଷ୍ଟା ନ କରିଥିଲେ ଜାତିର ଏ ସ୍ମରଣୀୟ ପୀଠଟି ଅନ୍ୟ ହାତକୁ ଚାଲି ଯାଇଥାନ୍ତା । ନିତ୍ୟାନନ୍ଦ କାନୁନ୍‌ଗୋ, ଭାଗିରଥୀ ମହାପାତ୍ର ଓ ବୀରକିଶୋର ଦାସଙ୍କ ସାହାଯ୍ୟରେ ମହତାବବାବୁ ସେ ଘରଟି କଣିଥିଲେ । ତାହାରି ଭିତରେ ନିଜେ ରହିବା ପାଇଁ ବି ଛୋଟ ଘରଟିଏ କରିଥିଲେ । 'ମହତାବ ନିବାସ' ନାଁରେ ଏ ଘରଟି ଜଣାଶୁଣା ।

କର୍ପୂର ଯାଇ କନା ପଡ଼ି ରହିଥିଲା ଭଳି ସ୍ୱରାଜ୍ୟ ଆଶ୍ରମରେ ଆଉ ରାଜନୈତିକ କାର୍ଯ୍ୟ ହେଉନାହିଁ । ହେଲେ ସ୍ୱାଧୀନତା ଆନ୍ଦୋଳନର ମୂକସାକ୍ଷୀ ହୋଇ ସେ ଦଦରା କୋଠା ରହିଛି । ଆଜି ବି ଅତୀତ ଇତିହାସ ବିଷୟରେ ଲୋକଙ୍କୁ ମନେ ପକାଇ ଦେଉଛି ।

ମହତାବବାବୁଙ୍କ ପଣ୍ଡିତ ପଣିଆ, ବିଚାର ବୁଦ୍ଧି ଓ ମାନବିକତାକୁ ସ୍ୱୀକାର କରି ଆନ୍ଧ୍ର, ସୌଗର ଓ ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ଡକ୍ଟରେଟ୍ ଉପାଧି ପ୍ରଦାନ କରିଥିଲେ ।

## ସମାଜ ସଂସ୍କାର

ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଶାର ରାଜନୀତି, ସାହିତ୍ୟ ଓ ସାମ୍ବାଦିକତା କ୍ଷେତ୍ରରେ ଅଧିକ ସମୟ ଦେଉଥିଲେ । ସମାଜ ସଂସ୍କାର କ୍ଷେତ୍ରରେ ତାଙ୍କର ଅବଦାନ ବି କିଛି କମ୍ ନୁହେଁ । ବିଶେଷ କରି

ହରିଜନମାନଙ୍କର ମନ୍ଦିର ପ୍ରବେଶ ଓ ଦେବୀପୀଠମାନଙ୍କରୁ 'ବଳି' ପ୍ରଥା ଉଠେଇବାରେ ସେ ଜୋର୍‌ଦାର ଉଦ୍ୟମ କରିଥିଲେ । ସେଥିପାଇଁ ସେ ପ୍ରଶଂସାର ପାତ୍ର ।

୧୯୪୮ ମସିହାର ଘଟଣା । ସେ ସେତେବେଳେ ଓଡ଼ିଶାର ପ୍ରଧାନମନ୍ତ୍ରୀ ଥାଆନ୍ତି । ଜାତିର ପିତା ମହାତ୍ମାଗାନ୍ଧିଙ୍କର ଆତତାୟୀ ଗୁଳିରେ ମୃତ୍ୟୁ ହୋଇଥାଏ । ମହାତ୍ମାଗାନ୍ଧିଙ୍କର ଚିତାଭସ୍ମ ପୁରୀ ସମୁଦ୍ରରେ ବିସର୍ଜନ କରିବା ପାଇଁ ପ୍ରସ୍ତାବ ଦିଆଗଲା । ଚିତାଭସ୍ମର ଆୟୋଜକମାନେ ସେ ପ୍ରସ୍ତାବରେ ରାଜି ହେଲେ ନାହିଁ । ସେମାନେ ଯୁକ୍ତି ଦର୍ଶାଇଥିଲେ ଯେ, ହରିଜନମାନଙ୍କୁ ସାଙ୍ଗରେ ନେଇ ଶ୍ରୀଜଗନ୍ନାଥ ମନ୍ଦିର ଭିତରକୁ ଯିବାକୁ ଗାନ୍ଧିଜୀଙ୍କୁ ଅନୁମତି ଦିଆଯାଉ ନ ଥିଲା । ତେଣୁ ଚିତାଭସ୍ମ ପୁରୀକୁ ନିଆଯିବ ନାହିଁ । ମହତାବ ବାବୁ ତା'ର ଜବାବରେ କହିଥିଲେ, ''ମହାତ୍ମା ଗାନ୍ଧିଙ୍କର ଜୀବଦ୍ଦଶାରେ ହରିଜନମାନଙ୍କର ମନ୍ଦିର ପ୍ରବେଶ ସଫଳ ହୋଇ ପାରି ନ ଥିଲା । ତାହା ଆଜି ତାଙ୍କ ଚିତାଭସ୍ମ ବିସର୍ଜନ ଦିବସରେ ହୋଇ ପାରିବ । ଆଉ ଚିତାଭସ୍ମ ପୁରୀ ପଠାଇବା ପାଇଁ ଆପତ୍ତି କ'ଣ ? ଚିତାଭସ୍ମ ବିସର୍ଜନ ଦିନ ପୁରୀ ଜଗନ୍ନାଥ ମନ୍ଦିରରେ ହରିଜନମାନଙ୍କର ପ୍ରବେଶ ଦାୟିତ୍ୱ ମୁଁ ନେଉଛି ।''

ଏହାପରେ ଚିତାଭସ୍ମ ଯଥାରୀତି ପୁରୀ ସମୁଦ୍ରରେ ବିସର୍ଜନ କରାଗଲା । ମହତାବବାବୁ ତାଙ୍କ ପ୍ରତିଶ୍ରୁତି ରକ୍ଷା କଲେ । ସବୁ ପ୍ରକାର ବାଧା ବିଘ୍ନ ସତ୍ତ୍ୱେ ବିଶିଷ୍ଟ ହରିଜନ ନେତା ମୋହନ ନାୟକଙ୍କ ସହାୟତାରେ ହରିଜନମାନଙ୍କୁ ଶ୍ରୀମନ୍ଦିରରେ ପ୍ରବେଶ କରାଇଲେ ।

ଓଡ଼ିଶାର ବିଭିନ୍ନ ଦେବୀପୀଠରେ ଦଶହରାବେଳେ ଛାଗବଳି

ଦିଆ ଯାଉଥିଲା । ଏପରି ଏକ ଘୃଣ୍ୟ ପ୍ରଥା ବିରୁଦ୍ଧରେ ସେ ଜନମତ ଜାଗ୍ରତ କରାଇଲେ । ତାଙ୍କର ଯୁକ୍ତିଥିଲା ଦେବୀ ହେଉଛନ୍ତି ମା । ସଂସାରର ପ୍ରତ୍ୟେକ ପ୍ରାଣୀ ତାଙ୍କର ସନ୍ତାନ । କୌଣସି ମା' କେବେହେଲେ ନିଜ ସନ୍ତାନର ରକ୍ତ ପିଇବାକୁ ଚାହେଁ ନାହିଁ । ଦେଖାଗଲା, ଓଡ଼ିଶାର ଚାରିଆଡୁ ତାଙ୍କ ପ୍ରତି ଦୃଢ଼ ସମର୍ଥନ ମିଳୁଛି । ମହତାବଙ୍କ ଯୁକ୍ତି କ୍ରମେ ସାରା ରାଜ୍ୟରେ ଆନ୍ଦୋଳନରେ ପରିଣତ ହୋଇଗଲା । ତାହାରି ଫଳରେ ଓଡ଼ିଶାର ବିଭିନ୍ନ ଦେବୀପୀଠରୁ ବଳି ପ୍ରଥା ବନ୍ଦ ହେଲା ।

**ଅନ୍ତିମ ଯାତ୍ରା**

୧୯୮୭ ମସିହା ଜାନୁୟାରୀମାସ ଦୁଇ ତାରିଖ ସକାଳ । ଖବର ମିଳିଲା, ଡକ୍ଟର ମହତାବ ଚାଲିଗଲେ । ପ୍ରଥମେ ଥୋକେ ଏହାକୁ ବିଶ୍ୱାସ କଲେ ନାହିଁ । କାରଣ ତାଙ୍କର ଅସୁସ୍ଥ ହେବା କଥା କେହି ଜାଣି ନ ଥିଲେ । ସେ ଯେ ଏତେ ଶୀଘ୍ର ଆମ ପାଖରୁ ଚାଲିଯିବେ ସେ ବିଶ୍ୱାସ ମଧ କାହାରି ନ ଥିଲା । କେହି ବିଶ୍ୱାସ କରନ୍ତୁ ବା ନାହିଁ ଖବରଟି ବିଜୁଳି ବେଗରେ ଚାରିଆଡ଼େ ଖେଳିଗଲା ।

ଡକ୍ଟର ମହତାବ ରାଜଧାନୀ ଡାକ୍ତରଖାନାର ନର୍ସିଂ ହୋମ୍‌ରେ ଚିକିତ୍ସିତ ହେଉଥିଲେ । ତାଙ୍କର ଆଗରୁ କଫ ଥିଲା । ସେଥିଯୋଗୁଁ ସେ ଶ୍ୱାସ ପ୍ରଶ୍ୱାସରେ କଷ୍ଟ ଅନୁଭବ କରୁଥିଲେ । ପୁଅ ଭର୍ତ୍ତୃହରି ନିଜେ ରହି ଦେଖାଶୁଣା କରୁଥିଲେ । ମଝିରେ ମଝିରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଓ ଅନ୍ୟ ନେତାମାନେ ମଧ ଖବର ରଖୁଥିଲେ । ଡାକ୍ତରମାନଙ୍କର ବ୍ୟକ୍ତିଗତ ଶ୍ରଦ୍ଧା ଥିଲା । ତେଣୁ ସେମାନେ ବି ଅକ୍ଳାନ୍ତ ପରିଶ୍ରମ କରୁଥାନ୍ତି । ମାତ୍ର ସବୁ ବିଫଳ ହେଲା । ସେ ସମସ୍ତଙ୍କୁ ଛାଡ଼ି ଆରପୁରକୁ ଚାଲିଗଲେ ।

ଶବ ଶୋଭାଯାତ୍ରା କଟକ ସହରର ମୁଖ୍ୟ ରାସ୍ତାରେ ଗଲାବେଳେ ଦୋକାନ ବଜାର ସବୁ ବନ୍ଦ । ବକ୍ସିବଜାର, ମଙ୍ଗଳାବାଗ୍, ରାଣୀହାଟ ଓ କଲେଜଛକ ଦେଇ ଶୋଭାଯାତ୍ରା ଓ.ଏମ.ପି. ଛକରେ ପହଞ୍ଚିଲା ବେଳକୁ ପ୍ରାୟ ଚାରିଘଣ୍ଟା ଲାଗିଗଲା । ଭାଗବତ ବାଣୀ ଅଛି –

"ପ୍ରାଣୀର ଭଲ ମନ୍ଦ ବାଣୀ
ମରଣ କାଳେ ତାହା ଜାଣି ।"

ଡକ୍ଟର ମହତାବଙ୍କ କ୍ଷେତ୍ରରେ ତାହା ପ୍ରମାଣିତ ହୋଇଗଲା । ସାଧନା କ୍ଷେତ୍ର ଏକାମ୍ର ନିବାସ । କର୍ମକ୍ଷେତ୍ର ବିହାରୀବାଗ୍‌ର ପ୍ରଜାତନ୍ତ୍ର ପରିସର । ଜନ୍ମସ୍ଥାନ ଅଗରପଡ଼ା । ସବୁଠି ନିଜର ପ୍ରିୟ ନେତାଙ୍କୁ ଶେଷ ଦର୍ଶନ ପାଇଁ ଅକଳନୀୟ ଭିଡ଼ । ହଜାର ହଜାର ନରନାରୀଙ୍କ ଆଖି ଲୁହରେ ଭିଜିଯାଇଛି । ଶେଷ ସମ୍ମାନ ଦେଖାଇବା ପାଇଁ ସମସ୍ତେ ନୀରବରେ ଘଣ୍ଟା ଘଣ୍ଟା ଧରି ଅପେକ୍ଷା କରି ରହିଛନ୍ତି । ଶେଷରେ ସେହି ଶେଷ ସମୟ ଆସିଲା ।

କୁଳର ପରଂପରା ଓ ବିଧି ଅନୁସାରେ ପୁଅ ଭର୍ତ୍ତୃହରି ମୁଖାଗ୍ନି ଦେବାକୁ ପ୍ରସ୍ତୁତ ହେଲେ । ତାଙ୍କ ଲଣ୍ଡିତ ମୁଣ୍ଡରେ ନୂଆ ଲୁଗା ଗୁଡ଼ା ହୋଇଥାଏ । ଅନ୍ୟ ପ୍ରିୟଜନଙ୍କ ସହିତ ମହତାବ ବାବୁଙ୍କ ମରଶରୀରକୁ ଶୋଭାଯାତ୍ରାରେ ଆଣି ଜୁଇରେ ରଖାଗଲା । ଚାରିଆଡ଼େ 'ମହତାବ ଅମର ରହେ' ଧ୍ୱନି ଉଠୁଥାଏ । ଗଗନ ପବନ କମ୍ପି ଉଠୁଥାଏ । ପୁଅ ଭର୍ତ୍ତୃହରି ବିଧି ଅନୁସାରେ ଚିତାରେ ଅଗ୍ନି ସଂଯୋଗ କଲେ ।

ଇତିହାସର ଏକ ଅଧ୍ୟାୟ ଶେଷ ହୋଇଗଲା ।

* * *

